# ଜହ୍ନ ମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

ଆଜି ପୁଣି ଆମେ ଜନନୀ ଦେବୀ ଦୁର୍ଗାଙ୍କ ପୂଜା ସକାଶେ ପ୍ରସ୍ତୁତ ହେଉଛୁଁ । ଏ ପୂଜାକୁ କେବଳ ଉତ୍ସବ ଭାବରେ ଦେଖିବା ଭୁଲ୍ ହେବ । ଦିବ୍ୟ ଜନନୀଙ୍କ ଆଶୀଷ ନେଇ ଆମେ ଯେପରି ସୁପଥରେ ସୁବୁଦ୍ଧି ଦ୍ୱାରା ଚାଳିତ ହୋଇ ପାରିବୁଁ, ଆମ ମନରେ ଏହି ଅବସରରେ ସେ ସଂକଳ୍ପର ସଞ୍ଚାର ହେବା ଦରକାର ।

## ଅମରବାଣୀ

ପ୍ରାଜ୍ଞସ୍ତୁ ଲଭତେ ଜ୍ଞାନଂ, ନ ଜଡ଼ୋ ଗୁରୁ ବୋଧନାତ୍ ।
ମୁକୁରେ ଦୃଶ୍ୟତେ ବିଂବଂ, ନ କଦାପି ମୃତ୍ତାଂଶକେ ॥

[ଯାହାର ଜ୍ଞାନ ପ୍ରତି ଆଗ୍ରହ ଥାଏ, ସେହି ଜ୍ଞାନ ଲାଭ କରେ । ଯିଏ ଜଡ଼ବତ୍ ସିଏ ଗୁରୁ ଯେତେ ବୁଝାଇଲେ ବି ବୁଝେ ନାହିଁ । ଦର୍ପଣ ସିନା କୌଣସି ବସ୍ତୁକୁ ପ୍ରତିଫଳିତ କରିପାରେ, ମାଟି କରିପାରେ କି ?]

ବର୍ଷ : ୯ ଅକ୍ଟୋବର ୧୯୮୪ ଅଙ୍କ : ୪

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦





## ପକ୍ଷଯୁକ୍ତ ଜଳପୋତ

ଆମେରିକାର ଉଇସ୍‌କୋନ୍‌ସିନ୍ ବିଶ୍ୱବିଦ୍ୟାଳୟ ଗୋଟିଏ ନୂଆ ଧରଣର ଜାହାଜର ଯୋଜନା ପ୍ରସ୍ତୁତ କରିଛନ୍ତି । ଏହା ମାଛ ଭଳି ପକ୍ଷ ଚାଳନା କରି ସମୁଦ୍ରରେ ଅଗ୍ରସର ହୋଇ ପାରିବ ।



## କଣ୍ଠସ୍ୱରରୁ ରୋଗ ନିରୂପଣ

ରୁଷ ଗବେଷକମାନେ ରୋଗୀର କଣ୍ଠସ୍ୱରରୁ ତା'ର ରୋଗ କ'ଣ ତାହା ଠଉରାଇବାର ପ୍ରଣାଳୀ ଆବିଷ୍କାର କରିଛନ୍ତି ।



## ଭିଡିଓ ଖେଳ ପ୍ରତି ସାବଧାନ !

ଭିଡିଓ ଗେମ ପ୍ରତି ଅତ୍ୟଧିକ ଆସକ୍ତ ହେବା ଅନୁଚିତ । ଯେଉଁମାନଙ୍କ ଭିତରେ ମୂର୍ଚ୍ଛା ରୋଗର ସମ୍ଭାବନା ଲୁଚି ହୋଇ ରହିଥିବ, ଭିଡିଓ ଗେମ୍ ସେଥିରେ ଇନ୍ଧନ ଯୋଗାଇ ଦେବ । ଏହା ଛଡ଼ା ଅନ୍ୟାନ୍ୟ କେତେକ ମାନସିକ ବିକଳତା ମଧ୍ୟ ଏହା ଦ୍ୱାରା ସୃଷ୍ଟି ହୋଇପାରେ ।

## ଜାଣନ୍ତି କି ?

୧. ଭାରତର ସବୁଠାରୁ ଉଚ୍ଚ ଜଳପ୍ରପାତ କେଉଁଠାରେ ?

୨. ହିମାଳୟ ସନ୍ନିକଟରେ ଅବସ୍ଥିତ ତୀର୍ଥସ୍ଥାନର ନାମ ?

୩. ଅହ୍‌ମଦାବାଦ ନିକଟରେ ବହମାନ ନଦୀର ନାମ କ'ଣ ?

୪. କ୍ଷେତ୍ରଫଳ ଦୃଷ୍ଟିରୁ ଭାରତର ବୃହତ୍ତମ ରାଜ୍ୟ କିଏ ?

୫. ଭାରତରେ ରାଣୀ ଭିକ୍ଟୋରିଆଙ୍କ ସ୍ମୃତିରେ ସ୍ଥାପିତ ଯାଦୁଘର କେଉଁଠାରେ ?

(୭୯ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ମହାପାତ୍ରେ ଶିଖିଲେ!

ଆମର ଗାଁ କଥା । ବୈଷ୍ଣବ ମହାପାତ୍ରଙ୍କ ଭଳି ଗପୁଡ଼ି ଖାଲି ଆମ ଗାଁରେ କାହିଁକି, ଖଣ୍ଡମଣ୍ଡଳରେ ନଥିଲେ । ଅବଶ୍ୟ ଗପ କହିଜାଣିଲେ ତା'ଠୁଁ ବେଶି ଶ୍ରୋତାକର୍ଷକ ଆଉ କ'ଣ ହୁଅନ୍ତା ? କିନ୍ତୁ ତାଙ୍କୁ ଗପିବାର କଳା କୌଶଳ ଜଣା ନଥିଲା କି ଭଲ ଗପ ବି ଜଣା ନଥିଲା । କିନ୍ତୁ ଗପିବାର ନିଶା ପ୍ରବଳ ।

ଏ ନିଶାର ଶିକାର ହେଉଥିଲା ତାଙ୍କ ସାନ ନାତି ପ୍ରବୀର । ସଞ୍ଜ ହେଲେ ସାହି ପିଲାଙ୍କ ସହ ଖେଳିବାକୁ ଯିବା ପାଇଁ ତା' ମନ ଆକୁଳବିକୁଳ ହୁଏ । କିନ୍ତୁ ଜେଜେଙ୍କ ଗପ ସରିଲେ ତ ?

ଯେତେବେଳେ ପ୍ରବୀର ସୁଯୋଗ ପାଇ ବାହାରକୁ ପଳାଇଯାଏ, ସେତେବେଳେ ମହାପାତ୍ରେ ତାଙ୍କ ବଡ଼ ବୋହୂ ନ ହେଲେ ସାନ ବୋହୂ ଆଗରେ ଗପ କହି ବସନ୍ତି । ସେମାନଙ୍କର କେତେ କାମ । ଗପ ଶୁଣିବାକୁ ଫୁରୁସତ କାହିଁ ? ସେମାନେ ତେଣୁ ପ୍ରବୀର ଯେଉଁଠି ଥିଲେ ତାକୁ ଖୋଜି ଆଣି ମହାପାତ୍ରଙ୍କ ଆଗରେ ହାଜର କରାଇ ଦିଅନ୍ତି ।

ଦୀର୍ଘ ଗ୍ରୀଷ୍ମ ଛୁଟିରେ ପ୍ରବୀରର ଆଉ ସ୍ୱାଧୀନ ଭାବରେ କିଛି କରିବାର ବା ଖେଳିବାର ସୁଯୋଗ ନଥାଏ ।

ଥରେ ଥରେ ପ୍ରବୀର ତା'ର କୌଣସି ସାଥିଙ୍କୁ ଆଣି ମହାପାତ୍ରଙ୍କ ଆଗରେ ବସାଇ ଦେଇ ନିଜେ ଖସିଯାଏ । କିଛି ସମୟ ଭିତରେ ସେ ପିଲାମାନେ ବିରକ୍ତ ହୋଇଯା'ନ୍ତି । ମହାପାତ୍ରଙ୍କୁ କହନ୍ତି, "ଆପଣଙ୍କର ଏଡ଼େ ସୁନ୍ଦର ଗପ ଶୁଣିବା ପ୍ରବୀର ଭାଗ୍ୟରେ ଯାହା ଜୁଟିଲା ନାହିଁ । ଆମେ ଯାଇ ତାକୁ ଖୋଜି ଆଣିବା ।"

"ନା, ନା । ବ୍ୟସ୍ତ ହେବା ଦରକାର ନାହିଁ । ପ୍ରବୀର ଏ ଗଳ୍ପ ଶୁଣିଛି । ତମେମାନେ

ରମା ଚୌଧୁରୀ



ଶୁଣି ନାଅ ।” ମହାପାତ୍ରେ ସେମାନଙ୍କୁ ଘୁଞ୍ଚିବାକୁ ନାମଙ୍ଗ ହୋଇ କହନ୍ତି । କିନ୍ତୁ ସେମାନେ ବା ପ୍ରବୀର ଭଳି କାହିଁକି ସଙ୍କୋଚ କରିବାକୁ ଯିବେ ? ଉଠିପଡ଼ି ସେମାନେ ଦୌଡ଼ି ପଳାଇବା ଅବସରରେ କହନ୍ତି, “ଆଜ୍ଞା, ଆପଣଙ୍କ ମୁହଁରୁ ଥରେ କାହିଁକି ଦଶଥର ଶୁଣିଲେ ବି ପୁରୁଣା କଥା ନୂଆ ଭଳି ଲାଗୁଥିବ । ପ୍ରବୀର ସିନା ବୁଝିପାରୁ ନାହିଁ, ଆମେ କ’ଣ ବୁଝୁନାହୁଁ ? ତାକୁ ବୁଝାଇଦେବା ଆମର କର୍ତ୍ତବ୍ୟ ।”

ସେମାନେ ପଳାଇ ଯିବା ପରେ ମହାପାତ୍ରେ ପୁଣି ପ୍ରବୀରଙ୍କୁ ଖୋଜିବାକୁ ଲାଗିପଡ଼ନ୍ତି । ପ୍ରବୀର ତ ଆଉ ଗାଁ ବାହାରକୁ ଯାଏ ନାହିଁ ! ସାଙ୍ଗ ପଡ଼ଶା ଯାହାଘରେ ହେଲେ ଥାଏ । ତାକୁ ଠିକ୍ ଠିକ୍ କରି ମହାପାତ୍ରେ ଯାଇ ସେଠାରେ ପହଞ୍ଚିଯା’ନ୍ତି । “ଆରେ ପ୍ରବୀର, ତୁ ଆସି ଏଠି ବସି ଖେଳରେ ସମୟ ନଷ୍ଟ କରୁଛୁ ? ଛୁଟି ଥରେ ଗଲେ ଆଉ ଆସିବ ? ଆ । ଗପ ଶୁଣିବୁ ଆ । ଆଜି ତୋତେ ଜମ୍ବୁକୁମାରୀ ଗଳ୍ପଟି କହିବ ।”

“ଜେଜେ, ଜମ୍ବୁକୁମାରୀ ଗଳ୍ପ ତ ତମେ ଆଗରୁ ଗପି ସାରିଛ !” କାନ୍ଦ କାନ୍ଦ ହୋଇ ପ୍ରବୀର କହେ ।

“ସେଥିରୁ କ’ଣ ହେଲା ? ରସଗୋଲ୍ଲା ଥରେ ଖାଇଥିଲେ କ’ଣ ଆଉ ଥରେ ଖାଉନା ? ଭଲ ଗଳ୍ପ ଦୁଇଥର ଶୁଣିଲେ କ୍ଷତି କ’ଣ ?” ଜେଜେ ଉତ୍ତର ଦିଅନ୍ତି ।

ପ୍ରବୀର ସକାଳେ ଜଳଖିଆ ଖାଇବା ବେଳକୁ ମହାପାତ୍ରେ ତା’ ଆଗରେ ଠିଆ ହୋଇ କହନ୍ତି, “ଶୀଘ୍ର ଖାଇସାରି ଆ । ଛୁଟି ଶେଷ ହେଲେ ଆଉ ମୋଠୁଁ କିଛି ଶୁଣିବାର ସୁଯୋଗ କେଉଁଠୁ ପାଇବୁ ?”

ପ୍ରବୀରର ମୁହଁ କାନ୍ଦ କାନ୍ଦ ହୋଇଯାଏ । ସେ ବୋଉକୁ କହେ, “ବୋଉ, ମୁଁ ପଶ୍ଚିମ ଆଡ଼େ ଦେଉଳ ଆଡ଼େ ବୁଲିଯିବା କଥା ?”

“ଆଉ କେବେ ଯିବୁ । ଗୁରୁଜନଙ୍କ ଅବାଧ୍ୟ ହେବା ଭଲ ନୁହେଁ ।” ବୋଉ ତାକୁ ଉପଦେଶ ଦିଅନ୍ତି ।

ପ୍ରବୀର ଆଉ କରିବ କ’ଣ !

ଦିନେ ପ୍ରବୀର ମହାପାତ୍ରଙ୍କୁ କହିଲା, "ଜେଜେ, ମୁଁ ସବୁଦିନେ ଗୋଟିଏ ଗପ ଶୁଣିଛି । ତା'ଠୁଁ ବେଶି ଶୁଣିଲେ ମୋ ମନରେ କିଛି ରହୁନାହିଁ ।"

"ହଉ ହେଲା । ତୋତେ ଗୋଟିଏ ଗପହିଁ କହିବି ।" କିନ୍ତୁ ମହାପାତ୍ରେ ଗୋଟିଏ ଗପକୁହିଁ ଲମ୍ବାଇ ଚାଲନ୍ତି କିମ୍ବା ସେ ଗପ ସହିତ ଆଉ ଗୋଟିଏ ଗପ ଯୋଡ଼ି ଦିଅନ୍ତି । ପ୍ରବୀର ଖସିଯାଇ ପାରେ ନାହିଁ ।




ପଡ଼ୋଶୀ ଘରକୁ ଆସିଥାଏ ରବି । ସେ ସହରରେ ରହେ । ପ୍ରବୀର ସହିତ ରବିର ଖୁବ ଗାଢ଼ ବନ୍ଧୁତା । ରବି କହିଲା, "ପ୍ରବୀର, ତୋର ଦେଖା ମିଳୁନାହିଁ କାହିଁକି?"

ପ୍ରବୀର ନିଜର ହାଲ୍ କହିଲା ।

"ତୋ ଜେଜେ ଗପ କହନ୍ତି? ମୋର ଗପ ଶୁଣିବାକୁ ବଡ଼ ଆଗ୍ରହ ।" ରବି ଜଣାଇଲା । ପ୍ରବୀର ଆନନ୍ଦରେ ରବିକୁ ନେଇ ମହାପାତ୍ରଙ୍କ ପାଖରେ ପହଞ୍ଚାଇ ଦେଲା । ମହାପାତ୍ରେ ଆନନ୍ଦରେ ଗପ କହି ଚାଲିଲେ ।

ଜଣେ ରାଜକୁମାର ସହିତ ରାଜକୁମାରୀର ବିବାହ ହେବାର ଥାଏ । ଅସୁରଟିଏ ରାଜକୁମାରୀକୁ ହରଣଚାଲ କରି ନେଇଗଲା । କେତେ କଷ୍ଟ କରି ରାଜକୁମାର ରାଜକୁମାରୀକୁ ଉଦ୍ଧାର କଲା, ମହାପାତ୍ରେ ସେହି ଗଳ୍ପ ଗପିଲେ ।

ଗଳ୍ପ ଶେଷ ହେବା ମାତ୍ରେ ରବି ପଚାରିଲା, "ଆଚ୍ଛା, ପୁଣି ଯଦି ଗୋଟିଏ ତାନ୍ତ୍ରିକ ସେ ରାଜକୁମାରୀକୁ ନେଇ ପଳାଇବ?"

"ହୁଁ ହୁଁ, ପଳାଇଲା ତ! ରାଜକୁମାର ସେଉଠୁ ନିଜେ ତନ୍ତ୍ର ବିଦ୍ୟା ଶିଖି ରାଜକୁମାରୀଙ୍କୁ ନେଇ ଆସିଲେ ।"

"ରାଜକୁମାର ତନ୍ତ୍ର ବିଦ୍ୟା କାହାଠାରୁ ଶିଖିଲେ?"

ଜେଜେ ଟିକିଏ ଭାବିଲେ ।

"ମୁଁ ଜାଣେ । ବଣ ଭିତରେ ଗୋଟିଏ ପାହାଡ଼ ଉପରେ ଜଣେ ବୁଢ଼ୀ ଥାଏ । ସେ ଅନେକ ତନ୍ତ୍ର ଜାଣିଥାଏ..." ପ୍ରବୀର ଅଧଘଣ୍ଟାଏ ସେକଥା ଗପିଲା ।

"ହେଲା, ହେଲା । ରାଜକୁମାର ସେଉଠୁ ରାଜକୁମାରୀଙ୍କୁ ନେଇ ଆସିଲେ ।" ଜେଜେ କହିଲେ ।

"କେତେ ବର୍ଷ ଲାଗିଲା?" ରବି ଉତ୍ସୁକ ହୋଇ ପଚାରିଲା ।

"ପ୍ରାୟ ପାଞ୍ଚ ବର୍ଷ ।"

"ସେ ପାଞ୍ଚବର୍ଷ କାଳ ରାଜକୁମାରୀ କିପରି ଅବସ୍ଥାରେ ଥିଲେ?" ରବି ପଚାରିଲା ।

ଜେଜେ ଏ ପାଇଁ ପ୍ରସ୍ତୁତ ନଥିଲେ । ରବି କହିଲା, "ମୁଁ ଜାଣେ!" ଏହା କହି ସେ ଗପିବାକୁ ଆରମ୍ଭ କରିଦେଲା । ତା' ନିଜ କଳ୍ପନା ଅନୁସାରେ ସେ ଘଟଣା ପରେ ଘଟଣା ଉଦ୍‌ଭାବନ କରି ଯାଉଥାଏ । ସଞ୍ଜ ଯାଇ ରାତି ହୋଇ ଆସିଲା । ମହାପାତ୍ରଙ୍କୁ ନିଦ ଲାଗି ଆସିଲା । କିନ୍ତୁ ପ୍ରବଳ ଉତ୍ସାହରେ ତାଙ୍କୁ ଠେଲି ଦେଇ ବାରମ୍ବାର ନିଦ ଭଙ୍ଗାଇ ରବି ଗପି ଚାଲିଥାଏ ।

"ଏଥର ଥାଉ । କାଲିକି ଶୁଣିବା ।" ମହାପାତ୍ରେ କହିଲେ ।

"ନା, ନା, ତମେ କୁହ । ଯେତେବେଳେ ରାଜକୁମାର ଓ ରାଜକୁମାରୀ ତାନ୍ତ୍ରିକଙ୍କୁ ନେଇ ବ୍ୟସ୍ତ, ରାଜ୍ୟରେ ରାଜାରାଣୀ କ'ଣ କରୁଥିଲେ? କୁହ, କୁହ..."

ମହାପାତ୍ରେ ପୁଣି ଗପିଲେ । ଗପି ଗପି ସେ କ୍ଲାନ୍ତ ହେଲେ । କହିଲେ, "ବାପା, ଟିକିଏ ପାଣି ଆଣିଲ!"

ରବି ଯେମିତି ପାଣି ଆଣିବାକୁ ଯାଉଛି, ସେ ଉଠି ପଡି ଚାଲିଗଲେ । ପ୍ରବୀର କୁଆଡ଼େ ଗଲା, ସେ ଖୋଜୁଥାନ୍ତି । ତାକୁ ଖୋଜା ଚାଲିଛି ଜାଣି ପ୍ରବୀର ଲୁଚିଲା । ବୁଢ଼ାଙ୍କୁ ସେତେ ରାତିରେ ବହୁତ ବୁଲିବାକୁ ହେଲା । ଅବଶେଷରେ ସେ ପ୍ରବୀରକୁ ଦେଖି କହିଲେ, "ଶୁଣ, ତୁ ତୋ ସେ ସାଙ୍ଗ ସହିତ ଗପ କର । ମୋ ପାଖକୁ କେହି ଆସିବା ଦରକାର ନାହିଁ ।"

"ନା, ନା, ତମକୁ ସବୁବେଳେ କାହିଁକି ହରକତ କରିବୁ?" ପ୍ରବୀର ଆନନ୍ଦରେ କହିଲା ।

ବୁଢ଼ାକାଳେ ମହାପାତ୍ରେ ବୁଝିଲେ ଜଣକ ଇଚ୍ଛା ବିରୁଦ୍ଧରେ ତାକୁ ବସାଇ କଥା କହିଲେ ବା କୁହାଇଲେ ତାକୁ କେତେ କଷ୍ଟ ହୁଏ!






Nivedita

[୧୭]

[ହସନ୍ ସର୍ଦ୍ଦାର ସହିତ ପିଙ୍ଗଳ ମରୁକଲ୍ଲା ପାଖରେ ପହଞ୍ଚି କଲ୍ଲା ଦ୍ୱାର ଖୋଲିବାକୁ ଚେଷ୍ଟା କରିବା ମାତ୍ରେ ପ୍ରବଳ ବିସ୍ଫୋରଣ ହେଲା । ହସନ୍ ସର୍ଦ୍ଦାରଙ୍କ କିଛି ସୈନିକ ମଲେ । ଯେଉଁ ଡାକୁ ଦଳ କଲ୍ଲାରେ ଥିବା ସୈନିକମାନଙ୍କୁ ହତ୍ୟା କରିଥିଲା, ସେ ଡାକୁଦଳ ସନ୍ଧାନରେ ଯାଇ ହସନ ଓ ପିଙ୍ଗଳ ଗୋଟିଏ ପାହାଡ଼ିଆ ମୁଲକରେ ତାକୁ ସାମ୍ନା କଲେ । ଭୀଷଣ ଲଢ଼େଇ ହେଲା । ସେଇଠି ପିଙ୍ଗଳ ସହ ଆକସ୍ମିକ ଭାବରେ ପଦ୍ମପାଦଙ୍କର ସାକ୍ଷାତ୍ ହୋଇଗଲା । ତା'ପରେ...]

ଏ ଜନ୍ମରେ ପଦ୍ମପାଦ ସହିତ ପୁଣି ଦେଖା ହେବ, ପିଙ୍ଗଳ ଏହା ମୋଟେ କଳ୍ପନା କରି ନଥିଲା । କାହିଁ ଅବନ୍ତୀ ନଗରୀ ଓ କାହିଁ ଏ ସୁଦୂର ମରୁଭୂମି !

ପ୍ରଥମେ ପିଙ୍ଗଳ ମନରେ ଯେଉଁ ବିସ୍ମୟ ଓ ଆନନ୍ଦ ଆସିଲା, ପରେ ପରେ ତାହା ସନ୍ଦେହରେ ପରିଣତ ହେଲା । ପଦ୍ମପାଦଙ୍କ ସହ ଅନେକ ଦିନରୁ ଦେଖା ହୋଇନାହିଁ । ପଦ୍ମପାଦର ନାମ ନେଇ କେହି ତାକୁ ଦଗା ଦେବାକୁ ଚେଷ୍ଟା କରୁନାହିଁ ତ ?

ସେ ହସନ୍ ଆଡ଼େ ଦୃଷ୍ଟିପାତ କଲା । ଦେଖିଲା, ହସନ୍ ମୁହଁରେ ମଧ୍ୟ ସନ୍ଦେହର



ଆଭାସ। ହସନ୍ ପିଙ୍ଗଳକୁ ଅତି ମୃଦୁ କଣ୍ଠରେ ପଚାରିଲା, "ପଦ୍ମପାଦ କିଏ କହେ।?"

ପିଙ୍ଗଳ ଏ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ପଦ୍ମପାଦ ତା' ପାଖକୁ ଘୁଞ୍ଚି ଆସିଲେ ଓ ହସନ୍ ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି ପଚାରିଲେ, "ପିଙ୍ଗଳ, ଇଏ କିଏ?"

ପିଙ୍ଗଳ ହଠାତ୍ କୌଣସି ଉତ୍ତର ଦେଲା ନାହିଁ। ସେ ଇତସ୍ତତଃ କରୁଥିବାର ଲକ୍ଷ୍ୟ କରି ପଦ୍ମପାଦ ପଚାରିଲେ, "କହେ। ପିଙ୍ଗଳ, ତମେ ମୋତେ ସନ୍ଦେହ କରୁଛ କି?"

ପିଙ୍ଗଳ କହିବ କ'ଣ? ସେ ସତରେ ସନ୍ଦେହ କରୁଥିଲା। କିନ୍ତୁ ସେକଥା ତ କହି ପାରିବ ନାହିଁ।

ହସନ୍ ସର୍ଦ୍ଦାର ପଦ୍ମପାଦ ଆଡ଼େ ପାଦେ ଅଗ୍ରସର ହୋଇ କହିଲା, "ମହାଶୟ, ଆପଣ କିଏ ମୁଁ ଜାଣେ ନା। ତେବେ ମନେହୁଏ ଆପଣ ମୋର ଏ ସାଥିଟିକୁ ଚିହ୍ନନ୍ତି।"

ପଦ୍ମପାଦ ହସି ଉଠିଲେ। ତା'ପରେ ପିଙ୍ଗଳର ପିଠି ଥାପୁଡ଼ାଇ ଦେଇ କହିଲେ, "ପିଙ୍ଗଳ, ତମେ ତମର ଏ ସାଥିକୁ କୁହ, ଭୟ ବା ସନ୍ଦେହ କରିବାର କାରଣ ନାହିଁ। ମୁଁ ଏଠାକୁ କପରି ଓ କାହିଁକି ଆସିଲି, ଯଥା ସମୟରେ ସେକଥା କହିବ। ଭାବନାହିଁ ଯେ ଏଠାରେ ଡାକୁମାନଙ୍କ ନେତୃତ୍ୱ ଦେବାପାଇଁ ମୁଁ ରହିଛି। ଆମ ସମସ୍ତଙ୍କ ଜୀବନ ଗୋଟାଏ ଗୋଟାଏ ରଙ୍ଗମଞ୍ଚ ଭଳି। ରଙ୍ଗମଞ୍ଚରେ ଦୃଶ୍ୟପଟ ଯେପରି ବଦଳୁଥାଏ, ଜୀବନରେ ବି ସେହିପରି ନାନା ପରିବର୍ତ୍ତନ ହେଉଥାଏ। ଯେ ଯାହାହେଉ, ତମ ସାହାଯ୍ୟରେ ମୁଁ ଯେଉଁ ସିଦ୍ଧି ହାସଲ୍ କରିଥିଲି, ସେକଥା କ'ଣ କେବେ ଭୁଲିପାରିବ? ତେଣୁ ତମ ପ୍ରତି ମୁଁ ବହୁତ କୃତଜ୍ଞ। ସମସ୍ତେ ନିଜ ନିଜ ଜୀବନରେ ଯାହା ପାଇବାକୁ ଚାହାନ୍ତି, ତାହା ପାଇପାରନ୍ତି ନାହିଁ। କିନ୍ତୁ ଆମେ ପାଇଛୁଁ। ଏହା କ'ଣ କମ ଭାଗ୍ୟର କଥା? ତେବେ ଏତେଦିନ ପରେ ମୋତେ ଏଠାରେ ହଠାତ୍ ଦେଖି ତମେ ସନ୍ଦେହ କରିବାରେ କିଛି ଆଶ୍ଚର୍ଯ୍ୟ ନାହିଁ।"

ପିଙ୍ଗଳ ମନରେ ଆଉ ସନ୍ଦେହ ରହିଲା ନାହିଁ। ସେ ତତ୍ପର ହୋଇ କହିଲା,




"ଛାଡ଼, ଛାଡ଼, ପଦ୍ମପାଦ, ସନ୍ଦେହର ପ୍ରଶ୍ନ ନାହିଁ । ମୋର ଏ ସାଥିହେଲେ ହସନ୍ ସର୍ଦ୍ଦାର । ନବାବଙ୍କର ଜଣେ ସେନାପତି । ଏ ମରୁ ପ୍ରଦେଶରେ ଶାନ୍ତି ରକ୍ଷାର ଦାୟିତ୍ୱ ଏହାଙ୍କ ଉପରେ ନ୍ୟସ୍ତ । ଆମେ ଭୈରବ ନାମରେ କୁଖ୍ୟାତ ଜଣେ ଡାକୁ ସର୍ଦ୍ଦାରକୁ ଖୋଜୁଛୁଁ ।"

"ତା'ର ସନ୍ଧାନ ପାଇଛ?" ପଦ୍ମପାଦ ପଚାରିଲେ ।

"ନା । ବରଂ ତା' ପାଇଁ ନବାବଙ୍କର ଅଶେଷ କ୍ଷତି ହୋଇଛି । ଏ ଅଞ୍ଚଳରେ ନବାବଙ୍କର ଗୋଟିଏ କିଲ୍ଲା ଥାଏ । ସେ କିଲ୍ଲାରେ ଥିବା ସମସ୍ତ ପ୍ରହରୀଙ୍କୁ ଭୈରବ ହତ୍ୟା କରିଛି । ଏପରିକି ଆମେ ସମସ୍ତେ ମଧ୍ୟ ମରିଥାନ୍ତୁ । ଦୈବକୁ ଆମ ଭିତରୁ ଥୋକେମାନ ମଲେ; ଆମେମାନେ କୌଣସି ମତେ ବଞ୍ଚି ଯାଇଛୁଁ ।" ପିଙ୍ଗଳ ଉତ୍ତର ଦେଲା ।

ପଦ୍ମପାଦ ହସନ୍ ସର୍ଦ୍ଦାର ଆଡ଼େ ଅନାଇ କହିଲେ, "ଯଦି ଆପଣ ଏ ମରୁପ୍ରଦେଶ ଦାୟିତ୍ୱରେ ଅଛନ୍ତି, ତେବେ ସାମ୍ନାରେ ଥିବା ଏ ଗୁଂଫା ଭିତରେ ବନ୍ଦୀ ଭାବରେ ରହିଥିବା ବିଚରା ବଣିକମାନଙ୍କୁ ମୁକ୍ତି ଦେଉ ନାହାନ୍ତି କାହିଁକି? ଦସ୍ୟୁ ନେତା ଭୈରବହିଁ ଏମାନଙ୍କୁ ବନ୍ଦୀ କରିଛି । ନିଜ ନିଜ ମାଲ୍‌ପତ୍ର ତ ହରେଇଛନ୍ତି, ବର୍ତ୍ତମାନ ପ୍ରାଣ ବି ଯିବ, ଏମିତି ଅବସ୍ଥାରେ ରହିଛନ୍ତି ।"

ପଦ୍ମପାଦ ଏତେ କଥା କହିବା ସତ୍ତ୍ୱେ ହସନ୍ ସର୍ଦ୍ଦାର ତାଙ୍କୁ ପୁରାପୁରି ବିଶ୍ୱାସ କରିପାରୁ ନଥିଲା । ସେକଥା ବୁଝିପାରି ପିଙ୍ଗଳ କହିଲା, "ସର୍ଦ୍ଦାର! ଆପଣ ମୋତେ ପଦ୍ମପାଦ ସହିତ କିଛି ସମୟ ସକାଶେ ଛାଡ଼ି ଯାଆନ୍ତୁ । ଦ୍ୱିଧାର କାରଣ ନାହିଁ । ଯଦି ଇଏ ଦସ୍ୟୁନେତା ଭୈରବ ହୋଇଥିବେ, ତେବେ ଏହାଙ୍କୁ କାବୁ କରି ଆପଣଙ୍କ ଆଗରେ ନେଇ ହାଜର୍ କରିବି—ଏ ଜବାବ୍ ଦେଉଛି ।"

ହସନ୍ ସର୍ଦ୍ଦାର ଏଥିରେ ରାଜି ହେଲା । ସେ କିଛି ସୈନ୍ୟ ଧରି ଯେଉଁ ଗୁଂଫାରେ ବଣିକମାନେ ବନ୍ଦୀ ଥିବା କଥା, ସେହି ଗୁଂଫା ଆଡ଼େ ଚାଲିଲା ।



"ପିଙ୍ଗଳ, ଏ ମରୁପ୍ରଦେଶ ହଠାତ୍ ତମ ସହ ଭେଟ ହେବ, ଏକଥା ମୁଁ କପରି ଭାବି ପାରିଥାନ୍ତି? ତମେ ଅବନ୍ତୀ ନଗରୀରେ ନିଜ ଘର ଛାଡ଼ି ଏତେ ଦୂର ଆସିଲ କାହିଁକି?" ପଦ୍ମପାଦ ପଚାରିଲେ ।

"ପଦ୍ମପାଦ! ମୋ କାହାଣୀ ଶୁଣିଲେ ତୁମେ ଦୁଃଖିତ ହେବ । ମୋତେ ଯେଉଁ ରତ୍ନଭର୍ତ୍ତି ଥଳି ଦେଇଥିଲ, ତାହା ହରାଇବା ସଙ୍ଗେ ସଙ୍ଗେ ଭଲ୍ଲୁକକେତୁର ସହାୟତା ମଧ୍ୟ ହରାଇଛି । ଏସବୁର କାରଣ ମୋର ଦୁଇଜଣ ଦୁଷ୍ଟ ବଡ଼ଭାଇ । ସେସବୁ ଘଟଣା ଗପିଲେ ବହୁତ ସମୟ ଯିବ । ତମେ କ'ଣ ଏଠାକୁ କୌଣସି ତାନ୍ତ୍ରିକକୁ ପରାଜିତ କରିବା ନିମନ୍ତେ ଆସିଛ? ତାହା ହୋଇଥିଲେ ପୁଣି ମୁଁ ତମ ସହାୟକ ଭାବରେ କାମ କରିବି । ତମେ ମୋର ଅଶେଷ ଉପକାର କରିଛ । ତୁମକୁ ଭେଟି ଆଜି ମୋର କି ଆନନ୍ଦ, ସେକଥା ସହଜରେ କହିପାରିବି ନାହିଁ ।" ପିଙ୍ଗଳ କହିଲା ।

ପିଙ୍ଗଳ ସେ ରତ୍ନଥଳି ହରାଇଥିବା ଓ ଅନେକ କଷ୍ଟ ପାଇଥିବା କଥା ଶୁଣି ପଦ୍ମପାଦ ବହୁତ ଦୁଃଖିତ ହେଲେ । ଭଲ୍ଲୁକ ପର୍ବତ ଅଞ୍ଚଳରେ ଅସୀମ ଧୈର୍ଯ୍ୟ ଓ ସାହସ ସହକାରେ ଦୁହେଁ ଯେଉଁ ଦୁଃସାହସିକ କାମ କରିଥିଲେ, ସେକଥା ପଦ୍ମପାଦ କେବେ ବି ଭୁଲିପାରି ନଥିଲେ । ତେଣୁ ପିଙ୍ଗଳର ଦୁଃଖରେ ସେ ଦୁଃଖିତ ହେବା ସ୍ୱାଭାବିକ ଥିଲା ।

ସେ କହିଲେ, "ପିଙ୍ଗଳ, କୌଣସି ତାନ୍ତ୍ରିକର ଅନ୍ୱେଷଣରେ ମୁଁ ଏଠାକୁ ଆସିନାହିଁ । ମହାମାୟୀଙ୍କ ସମାଧିରୁ ଯେଉଁ ଅପୂର୍ବ ବସ୍ତୁମାନ ମୁଁ ପାଇଛି, ସେସବୁ ପାଇବା ପରେ ମୋର ଆଉ କ'ଣ ପ୍ରୟୋଜନ? ବୈଭବର ଅଧିକାରୀ ହେବା ପରେ ଅନେକ ଲୋକ ବିଳାସ ବ୍ୟସନରେ ବା ଅଳସୁଆ ଭାବରେ ଜୀବନ ବିତାଇ ଦିଅନ୍ତି । ମୁଁ ସେପରି ଲୋକ ନୁହେଁ । ଜୀବନରେ କ୍ଷମତା ବା ଅଲୌକିକ ଶକ୍ତି ସବୁ ନୁହେଁ, ମଣିଷ ସଜାଗ ରହିଲେ ସର୍ବଦା ଶିକ୍ଷାଲାଭ କରି ଚାଲିଥିବ । ମୁଁ ସେହିପରି ଜଣେ ଶିକ୍ଷାର୍ଥୀ । କାଣ୍ଟୁଦାନ ପାଇଁ



ପରିଭ୍ରମଣକୁ ବ୍ରତ ରୂପେ ଗ୍ରହଣ କରିଛୁ । ଦିନେ ବଣିକ ସହିତ ଏ ମରୁପ୍ରଦେଶ ଅତିକ୍ରମ କରୁଥିଲି । ବଣିକଦଳ ଡାକୁଦଳ ହାବୁଡ଼ରେ ପଡ଼ି ସର୍ବସ୍ୱ ହରାଇଲେ । ସେମାନଙ୍କୁ ସେ ଗୁମ୍ଫା ଭିତରେ ବନ୍ଦୀ କରିଛନ୍ତି ଡାକୁମାନେ । ସେମାନଙ୍କ ଭିତରେ କେତେଜଣ ଅବନ୍ତୀ ନଗରୀର ଲୋକ ବି ରହିଛନ୍ତି । ତମର ଚିହ୍ନା ଲୋକ ବି ଥିବେ ।"

ପଦ୍ମପାଦଙ୍କ କଥା ଶୁଣି ପିଙ୍ଗଳ ଆଶ୍ଚର୍ଯ୍ୟ ହୋଇ କହିଲା, "ପଦ୍ମପାଦ! ତମେ ମହା-ତାନ୍ତ୍ରିକ । ଡାକୁଦଳ ଯେବେ ବଣିକମାନଙ୍କୁ ଆକ୍ରମଣ କଲେ, ତମେ କ'ଣ ସେଥିରୁ ବଣିକମାନଙ୍କୁ ରକ୍ଷା କରିପାରିଲ ନାହିଁ? ତମେ ଇଚ୍ଛା କରିଥିଲେ ତ ସହଜରେ ଡାକୁ-ମାନଙ୍କୁ ଧ୍ୱଂସ କରିଦେଇ ପାରିଥାନ୍ତ ।"

ପଦ୍ମପାଦ ସ୍ମିତହାସ୍ୟ କରି କହିଲେ, "ପିଙ୍ଗଳ, ମୁଁ ଜଣେ ସାଧାରଣ ଯାତ୍ରୀ ଭାବରେ ବଣିକଦଳରେ ଯୋଗ ଦେଇଥିଲି । ମୁଁ ଜଣେ ତାନ୍ତ୍ରିକ, ଏକଥା ସେମାନଙ୍କୁ ଜାଣିବାର ସୁଯୋଗ ଦେଇ ନଥିଲି । ହଠାତ୍ କିପରି ତନ୍ତ୍ରବିଦ୍ୟା ଦେଖାଇବି? ସବୁ ପରିସ୍ଥିତିରେ ତନ୍ତ୍ରବିଦ୍ୟାର ଉପଯୋଗ କ'ଣ ଭଲ? ତେଣୁ ଡାକୁଦଳ ବଣିକମାନଙ୍କୁ ଆକ୍ରମଣ କରିବାମାତ୍ରେ ମୁଁ ଗୋଟିଏ ଶିଳା ଆଢୁଆଳରେ ଲୁଚିଗଲି ।"

ପିଙ୍ଗଳ ଏ କୈଫିୟତରେ ସନ୍ତୁଷ୍ଟ ହେଲା ନାହିଁ । ସେ ପୁଣି ପଚାରିଲା, "ପଦ୍ମପାଦ! ତମ ପାଖରେ ଏପରି ଯାଦୁ ଓ ଆଶ୍ଚର୍ଯ୍ୟଜନକ ପଦାର୍ଥ ଅଛି, ଯାହା କରାମତରେ ତମେ ଆଖି ପଲକରେ ସ୍ଥାନରୁ ସ୍ଥାନାନ୍ତର ଯାଇ ପାରିବ । ତମେ ପାଦରେ ଚାଲି ଚାଲି ବୁଲିବା କ'ଣ ଦରକାର? ଏତେ ଶ୍ରମ ସ୍ୱୀକାର କରି ଯେଉଁସବୁ ଶକ୍ତି ଆୟତ୍ତ କଲ, ତା'ର ବ୍ୟବହାର କରି ଆନନ୍ଦରେ ନିଜ ଅଭିଳାଷ ପୂର୍ଣ୍ଣ କରୁନାହଁ କାହିଁକି?"

ପଦ୍ମପାଦ କିଛି ସମୟ ପର୍ଯ୍ୟନ୍ତ ତୀବ୍ର ଦୃଷ୍ଟିରେ ପିଙ୍ଗଳକୁ ଅନାଇ କହିଲେ, "ବୁଝୁଛି, ଏବେ ମଧ୍ୟ ମୋ ବିଷୟରେ ତମ ମନରୁ ସନ୍ଦେହ ଦୂର ହୋଇନାହିଁ । ମୁଁ ଯେ ବିଳାସ ପାଇଁ ଭ୍ରମଣ କରୁଛି, ତାହା ନୁହେଁ । ତୀର୍ଥ ଭ୍ରମଣର

ପୁଣ୍ୟଲାଭ ମୋର ଉଦ୍ଦେଶ୍ୟ । ଯାଦୁ ସାହାଯ୍ୟରେ ଆଖି ପଲକରେ ସ୍ଥାନରୁ ସ୍ଥାନାନ୍ତର ଗଲେ ସେ ପୁଣ୍ୟ ମିଳିବ ନାହିଁ । ପାଦରେ ଚାଲି ଚାଲି ତୀର୍ଥ ଭ୍ରମଣ କରିବାକୁ ହେବ । ତାହାହିଁ ବିଧି ।”

ସେମାନେ କଥାବାର୍ତ୍ତା କରୁଥିଲେ, ସେତିକି-ବେଳେ ଅଦୂରରୁ ସୈନିକମାନଙ୍କର କୋଳାହଳ ଏବଂ ବନ୍ଦୀ ବଣିକମାନଙ୍କ କ୍ରନ୍ଦନ ଓ ହାହୁତାଶ ଶୁଭିଲା । ଜଣେ ସୈନିକ ଦୌଡ଼ି ଆସି ସେମାନଙ୍କ ଆଗରେ ପହଞ୍ଚି କହିଲା, “ଆଜ୍ଞା, ହସନ୍ ସର୍ଦ୍ଦାର ଦସ୍ୟୁନେତା ଭୈରବଙ୍କୁ ଧରିବା ନିମନ୍ତେ ଆପଣମାନଙ୍କ ସାହାଯ୍ୟ ଚାହୁଁଛନ୍ତି ।”

ପିଙ୍ଗଳ ପଦ୍ମପାଦଙ୍କ ଆଡ଼େ ମିନତିଭରା ଦୃଷ୍ଟିରେ ଅନାଇ କହିଲା, “ପଦ୍ମପାଦ, ହସନ୍ ସର୍ଦ୍ଦାରଙ୍କ ବିନା ଏ ମରୁପ୍ରଦେଶରେ ଭୋକଶୋଷରେ ମୋ ପ୍ରାଣ ଯାଇଥାନ୍ତା । ନିର୍ମମ ଦସ୍ୟୁମାନଙ୍କ କବଳରୁ ଏ ମରୁପ୍ରଦେଶକୁ ମୁକ୍ତ କରି ନିରୀହ ଲୋକଙ୍କ ଗମନାଗମନ ସୁଗମ କରିବା ନିମନ୍ତେ ସେ ଚେଷ୍ଟା କରୁଛନ୍ତି । ତାଙ୍କୁ ତୁମର ଅଲୌକିକ ଶକ୍ତି ଦ୍ୱାରା ସାହାଯ୍ୟ କର । ଭୈରବଦସ୍ୟୁକ ଧରିବା ସହଜ କଥା ନୁହେଁ । ସେ ଭୀଷଣ ନିଷ୍ଠୁର । ଛଳ କପଟ ଦ୍ୱାରା ଏଠାରେ ଛାଉଣି ଜଗିରହିଥିବା ସୁଲତାନ୍‌ଙ୍କ ସୈନ୍ୟମାନଙ୍କୁ ସେ ହତ୍ୟା କରୁଛି । ତୁମେ ଯଦି ଏ ଅଞ୍ଚଳକୁ ତା’ ଦୌରାତ୍ମ୍ୟରୁ ମୁକୁଳାଇ ପାରିବ, ତେବେ ଜନସାଧାରଣ ଓ ସୁଲତାନ ତମ ପ୍ରତି କୃତଜ୍ଞ ରହିବେ ।”



ପଦ୍ମପାଦ ଟିକିଏ ଚିନ୍ତା କରି କହିଲେ, "ତମେ କହୁଛ, ସାଧାରଣ ଯାତ୍ରୀର ଭୂମିକା ତ୍ୟାଗ କରି ବର୍ତ୍ତମାନ ମୋତେ ପୁଣି ତାନ୍ତ୍ରିକ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼ିବ, ନା କ'ଣ ? ହଉ, ତାହାହିଁ ହେଉ ।"

ଏହା କହି ସେ ଖଣ୍ଡିଏ ପଥର ଉଠାଇ ନେଇ ତାକୁ ନିଜ ଛୁରିକା ସାହାଯ୍ୟରେ ଖଣ୍ଡ ଖଣ୍ଡ କରି କାଟିବାକୁ ଲାଗିଲେ । ଅଧୈର୍ଯ୍ୟ ହୋଇ ପିଙ୍ଗଳ କହିଲା, "ପଦ୍ମପାଦ, ତମେ ଇଏ କ'ଣ କରୁଛ ? ଦସ୍ୟୁଦଳ ପଳାଇଗଲେ ତାଙ୍କୁ ଧରିବା ସାଧାରଣ ସୈନିକମାନଙ୍କ ପକ୍ଷରେ ଅସମ୍ଭବ । କାରଣ ଏ ମରୁଭୂମି ଭିତର ଦେଇ ବିଜୁଳି ବେଗରେ ଗତିକରି ପାରନ୍ତି ଏ ଦସ୍ୟୁଦଳ ।"

"ସୈନିକମାନଙ୍କ ପକ୍ଷରେ ତାଙ୍କୁ ଧରିବା ଅସମ୍ଭବ ବୋଲି ତ ମୁଁ ଅନ୍ୟ ବ୍ୟବସ୍ଥା କରୁଛି । ଦେଖ, ଏ ବଡ଼ ପଥର ଖଣ୍ଡମାନ ହେଲେ ବାଘ; ସାନଗୁଡ଼ିକ ହେଲେ ହେଟା । ଏମାନେ ଯାଇ ଦସ୍ୟୁମାନଙ୍କୁ ଘଉଡ଼ାଇ ଗୋଟାଏ ସ୍ଥାନକୁ ନେଇ ଆସିବେ ।" ଏହା କହି ପଦ୍ମପାଦ ସଙ୍ଗେ ସଙ୍ଗେ ସେସବୁ ଛୋଟବଡ଼ ପଥରଖଣ୍ଡ ଉପରେ ମନ୍ତ୍ର ପଢ଼ି ସେସବୁ ଫୋପାଡ଼ି ଦେଲେ । ତତ୍‌କ୍ଷଣାତ୍ ବାଘ ଓ ହେଟାରେ ପରିଣତ ହୋଇ ସେମାନେ ପାହାଡ଼ରୁ ଲୁଦିପଡ଼ି ଚାରିଆଡ଼କୁ ବ୍ୟାପି ଗଲେ ।

ସେ ଅଦ୍ଭୁତ ଦୃଶ୍ୟ ଦେଖି ପିଙ୍ଗଳର ବିସ୍ମୟର ସୀମା ରହିଲା ନାହିଁ ।



ସେତିକିବେଳେ ହସନ୍ ଦ୍ୱାରା ମୁକ୍ତ ପାଇଥିବା ବଣିକମାନେ ଆସି ସେମାନଙ୍କ ପାଖରେ ପହଞ୍ଚିଲେ । ବଣିକମାନେ ପ୍ରାଣର ଆଶା ଛାଡ଼ି ଦେଇଥିଲେ । ଥରେ ନିର୍ମମ ଭୈରବଦସ୍ୟୁ କବଳରେ ପଡ଼ିଲେ ତାହାକୁ ନିସ୍ତାର ମିଳେ ନାହିଁ ବୋଲି ସେମାନେ ଶୁଣିଥିଲେ । ଗୁଂଫା ଭିତରୁ ମୁକ୍ତି ପାଇ ସେମାନେ ନିଜ ଭାଗ୍ୟକୁ ବିଶ୍ୱାସ କରିପାରୁ ନଥିଲେ ।

ହସନ୍ ସର୍ଦ୍ଦାର ପିଙ୍ଗଳ ପାଖକୁ ଦୌଡ଼ି ଦୌଡ଼ି ଆସି କହିଲା, "ପିଙ୍ଗଳ! ବଡ଼ ଆଶ୍ଚର୍ଯ୍ୟର କଥା । ଏ ମୁଲକରେ ବାଘ ହେଟା କେହି କେବେ ଦେଖି ନଥିଲେ । କିନ୍ତୁ ଆଜି ଏ ବାଘ ହେଟା ଆସିଲେ କେଉଁଠାରୁ ?" ସେ ଆଶ୍ଚର୍ଯ୍ୟ ହୋଇ ପାହାଡ଼ ତଳ ଦେଇ ଦୌଡ଼ୁଥିବା ବାଘ ହେଟାଙ୍କ ଆଡ଼େ ଅନାଇ ରହିଲା ।

"ପଦ୍ମପାଦ, ତମ ଅସଲ ଆଉ ଗୋପନ ରଖିବା ସମ୍ଭବପର ନୁହେଁ । ମୁଁ ଏମାନଙ୍କୁ କହି ଦେଉଛି । ରାଗିବ ନାହିଁ ।" ପିଙ୍ଗଳ କହିଲା । ପଦ୍ମପାଦ ଅଳ୍ପ ହସିଲେ ।

ପିଙ୍ଗଳ ସେଉଠୁ ହସନ୍ ସର୍ଦ୍ଦାରକୁ କହିଲା, "ଏ ପଦ୍ମପାଦ ଜଣେ ସାଧାରଣ ବ୍ୟକ୍ତି ନୁହନ୍ତି, ମହାତାନ୍ତ୍ରିକ । ଆମର ସୌଭାଗ୍ୟ, ତାଙ୍କ ସାହାଯ୍ୟ ମିଳିଗଲା । ତାଙ୍କର ଯାଦୁବଳରେ ବାଘ ହେଟା ସୃଷ୍ଟି ହୋଇଛନ୍ତି । ସେମାନେ ଡାକୁମାନଙ୍କୁ ଘଉଡ଼ାଇ କରି ଆମର ପାଖକୁ ନେଇ ଆସିବେ ।"

ଇତିମଧ୍ୟରେ ପଦ୍ମପାଦ ତାଙ୍କ ଅଙ୍ଗୁଠି ଖୋଲି ଖଣ୍ଡିଏ ପଥର ଉପରେ ରଖିଦେଲେ । ସେଥିରୁ ଅପୂର୍ବ ଆଲୋକ ବାହାରି ଗୁହାଦ୍ୱାରକୁ ଆଲୋକିତ କଲା । ଗୁହୁଁ ଗୁହୁଁ ପାହାଡ଼ର ଭିନ୍ନ ଭିନ୍ନ ଅଞ୍ଚଳରୁ ମଣିଷଙ୍କ ଆର୍ତ୍ତନାଦ ସଙ୍ଗେ ସଙ୍ଗେ ବାଘ ଓ ହେଟାଙ୍କ ଭୀଷଣ ଗର୍ଜନ ଶୁଭିଲା । ଦସ୍ୟୁମାନେ ପ୍ରାଣ ବିକଳରେ ଦୌଡ଼ି ଆସୁଥିବାର ଓ ବାଘ ହେଟାମାନେ ସେମାନଙ୍କୁ ଖୋଜି ଆଣୁଥିବାର ଦେଖାଗଲା । (କ୍ରମଶଃ)





# ଖିଆଲି ରାଜା ?

ଘଟି କଟି ଆନ୍ଧାର ରାତି । ଭୁହାଲୁ ଭୁହା ଥଣ୍ଡା ପବନ ସାଙ୍ଗକୁ ଅସରାଏ ଲେଖାଏଁ ବର୍ଷା ମାଡ଼ ଆସୁଥାଏ । ଅନବରତ ଘଡ଼ଘଡ଼ ମଝିରେ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ଼ି । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତଳେ ବି ବିଚଳିତ ନ ହୋଇ ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ଶବଟିକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତୁମେ ଏ ଅସମୟରେ ଯେପରି ଧୈର୍ଯ୍ୟର ପରିଚୟ ଦେବା ସଙ୍ଗେ ସଙ୍ଗେ ଶ୍ରମ ସ୍ୱୀକାର କରୁଛ, ଏହା ଯେ ତୁମ ଭିତରେ ଥିବା ବିଶେଷ ଗୁଣର

**ବେତାଳ କଥା**



ପରିଚୟ ଦେଉଛି, ସନ୍ଦେହ ନାହିଁ । ତେବେ ରାଜାମାନେ ସାଧାରଣତଃ ଖାମ୍‌ଖିଆଲି ହୋଇଥାନ୍ତି । ଥରେ ଯେଉଁ ସିଦ୍ଧାନ୍ତ ନିଅନ୍ତି, ପରେ ପୁଣି ସେ ସିଦ୍ଧାନ୍ତର ବିରୋଧରେ କାମ କରନ୍ତି । ତମ କ୍ଷେତ୍ରରେ ଏଭଳି ହେବ ନାହିଁ ତ ? ମୋ ବକ୍ତବ୍ୟ ବୁଝାଇବା ନିମନ୍ତେ ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ; ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ପ୍ରାଚୀନ କାଳର କଥା । ଗିରିଦୁର୍ଗ ନାମକ ରାଜ୍ୟରେ ରାଜୁତି କରୁଥିଲେ ରାଜା ଭୀମସିଂହ । ସେ ପ୍ରତି ଗାଁରେ ଜଣେ ଜଣେ ମୁଖ୍ୟ ନିଯୁକ୍ତ କରିଥିଲେ । ବର୍ଷ ଶେଷରେ ମୁଖ୍ୟମାନଙ୍କର ବୈଠକ ଡକାଇ ପ୍ରତି ଗ୍ରାମର ସୁବିଧା ଅସୁବିଧା କଥା ବୁଝୁଥିଲେ । ଗ୍ରାମର ବିକାଶ ନିମନ୍ତେ ଯାହାର ଯେପରି ଅର୍ଥ ଆବଶ୍ୟକ, ତାହା ସେ ମୁଖ୍ୟମାନଙ୍କୁ ଯୋଗାଇ ଦେଉଥିଲେ ।

ରାଜ୍ୟର ଗୋଟିଏ ପ୍ରାନ୍ତରେ ରାମପୁର ଓ ମଙ୍ଗଳପୁର ନାମକ ଦୁଇଟି ଗାଁ ଥିଲା । ରାମପୁର ଗାଁରେ ମୁଖ୍ୟ ଥିଲେ ଭରତ ଦାସ । ମଙ୍ଗଳପୁରର ମୁଖ୍ୟ ଥିଲେ ରବି ଚୌଧୁରୀ ।

ରାମପୁର ଗାଁର ଅବସ୍ଥିତି ଟିକିଏ ତଳିଆ ସ୍ଥାନରେ ହୋଇଥିବା ଯୋଗୁଁ ବର୍ଷାଦିନେ ଗାଁରେ ପାଣି ଜମି ଯାଉଥାଏ । ଗାଁର କିପରି ଭଲ ହେବ, ଏ ଚିନ୍ତାହିଁ ଭରତ ଦାସଙ୍କ ମନରେ ସର୍ବଦା ଥାଏ । ଜଳ ବହୁଳତାରୁ କିପରି ଗାଁକୁ ରକ୍ଷା କରିବେ, ଅନେକ ଦିନ ପର୍ଯ୍ୟନ୍ତ ସେ ଏଇ କଥା ଚିନ୍ତା କରୁଥାନ୍ତି ।

ଥରେ ଗାଁରେ ଆସି ଅତିଥି ହେଲେ ଜଣେ ସାଧୁ । ସେ ସାଧୁ ହେଲେ କ'ଣ ହେବ, ତାଙ୍କର ବୈଷୟିକ ଜ୍ଞାନ ଅମାପ ବୋଲି ଜଣାପଡ଼ିଲା । ଭରତ ଦାସ ଦିନେ ତାଙ୍କୁ ଗାଁର ସମସ୍ୟା କଥା ଜଣାଇବାରୁ ସାଧୁ ତାଙ୍କ ସହ ବୁଲି ଗାଁର ଅବସ୍ଥିତି ଲକ୍ଷ୍ୟ କଲେ ଓ କହିଲେ, "ଭରତ, ତମ ସମସ୍ୟାର ସମାଧାନ ସକାଶେ ବିଶେଷ କଷ୍ଟ କରିବାକୁ ପଡ଼ିବ ନାହିଁ । ଗାଁର ଚତୁର୍ଦ୍ଦିଗରେ ଗୋଟାଏ ନାଳ ଖୋଳି ଦେଲେ ପାଣିତକ ସେଥିରେ ଜମା ହୋଇ ରହିବ । ନାଳର ଗୋଟିଏ ଅଞ୍ଚଳକୁ ପ୍ରଶସ୍ତ କରିଦେଲେ



ତାହା ଗୋଟିଏ ସରୋବର ଭଳି ଦେଖାଯିବ । ଗ୍ରୀଷ୍ମଦିନେ ଗାଁର ବାତାବରଣକୁ ଏହା ଶୀତଳ ରଖିବ । ଆହୁରି ନାନା ସୁବିଧା ବି ହେବ ।"

ଭରତ ଦାସଙ୍କୁ ଏ ପ୍ରସ୍ତାବ ଖୁବ୍ ଭଲ ଲାଗିଲା । ସେ ଏଥିପାଇଁ କେତେ ଖର୍ଚ୍ଚ ହେବ, ସାଧୁଙ୍କ ସହ ବସି ତା'ର ଗୋଟାଏ ଅଟକଳ କଲେ । ଦେଖାଗଲା, ଯୋଜନାଟି କାର୍ଯ୍ୟକାରୀ କରିବା ନିମନ୍ତେ ସମୁଦାୟ ଦେଢ଼ଲକ୍ଷ ମୁଦ୍ରା ପ୍ରୟୋଜନ ହେବ ।

"ତମେ ରାଜାଙ୍କୁ ଭେଟି ଏତକ ଆଣ । ମୁଁ ଜାଣେ, ରାଜା ଏହି ବର୍ଷ ଶେଷ ଥର ପାଇଁ ବିନା ସର୍ତ୍ତରେ ଅର୍ଥ ଯୋଗାଇ ଦେବେ । ଆଗାମୀ ବର୍ଷଠୁଁ ନିୟମ ବଦଳିଯିବ । ଯେଉଁ ଗାଁ ଟଙ୍କା ଗ୍ରହିବ ତାକୁ ଦିଆଯିବ, କିନ୍ତୁ ସେ ଟଙ୍କା ସେହି ଗାଁର ମୁଖ୍ୟ କେତେ ବର୍ଷ ଭିତରେ ରାଜକୋଷକୁ ପରିଶୋଧ କରିବାକୁ ବାଧ୍ୟ ରହିବେ ।" ସାଧୁ କହିଲେ ।

"ଧନ୍ୟବାଦ । ମୁଁ ରାଜାଙ୍କଠାରୁ ଆଗାମୀ ବୈଠକ ବେଳେ ଟଙ୍କା ଆଣିବି ।" ଭରତ ଦାସ କହିଲେ ।

ପଡ଼ୋଶୀ ମଙ୍ଗଳପୁର ଗାଁର ମୁଖ୍ୟ ରବି ଚୌଧୁରି ସାଧୁଙ୍କ ପରାମର୍ଶ କଥା ଶୁଣି ତାଙ୍କୁ ନିଜ ଗାଁକୁ ନିମନ୍ତ୍ରଣ କଲେ । ସେ ସାଧୁଙ୍କୁ କହିଲେ, "ମହାଶୟ, ଆମ ଗାଁରେ ଏମିତି ବିଶେଷ ସମସ୍ୟା କିଛି ନାହିଁ, ତେବେ ଗାଁର ଉନ୍ନତି ପାଇଁ ଆପଣ ଯଦି କୌଣସି ପରାମର୍ଶ ଦେବେ, ତେବେ ଆମେ କୃତଜ୍ଞ ହେବୁଁ ।"

ସାଧୁ ଗାଁର ଅବସ୍ଥିତି ଲକ୍ଷ୍ୟ କଲେ । ଗାଁର ମାଟି ମଧ୍ୟ ପରୀକ୍ଷା କଲେ । ତା'ପରେ କହିଲେ, "ବାବୁ, ତମର ମାଟି ନଡ଼ିଆ ଗଛ ସକାଶେ ବଡ଼ ଅନୁକୂଳ । ଖାଲି ନଡିଆ ବିକିରୁ ଯେ ଲାଭ ହେବ, ତାହା ନୁହେଁ, ନଡ଼ିଆ କତାରୁ ନାନାଦି ଚିଜ ପ୍ରସ୍ତୁତ କରାଯାଇ ପାରିବ । ସେଥି ସକାଶେ ଗୋଟିଏ କାର୍ଯ୍ୟାଳୟ ସ୍ଥାପନ କରିବାକୁ ହେବ ।"

ବ୍ୟାପକ ନଡିଆ ଗଛ ପାଇଁ ଏବଂ ଗୋଟିଏ ନଡିଆକତା କାର୍ଯ୍ୟାଳୟ ଖୋଲିବା ପାଇଁ ପ୍ରାୟ ଲକ୍ଷେ ଟଙ୍କା ଦରକାର ହେବ ବୋଲି ଅଟକଳ



ହେଲା । ସାଧୁ ରବି ଚୌଧୁରୀଙ୍କୁ କହିଦେଲେ, ଏହି ବର୍ଷ ଟଙ୍କା ନ ଆଣିଲେ ପର ବର୍ଷକୁ ଆଉ ସାହାଯ୍ୟ ମିଳିବ ନାହିଁ, ମିଳିବ ଋଣ ।

କିଛିଦିନ ପରେ ମୁଖ୍ୟମାନଙ୍କର ବୈଠକ ସକାଶେ ରାଜଧାନୀରୁ ଡାକରା ଆସିଲା । ଭରତ ଦାସ ଏବଂ ରବି ଚୌଧୁରୀ ଯାଇ ବୈଠକର ପୂର୍ବଦିନ ରାଜଧାନୀରେ ପହଞ୍ଚିଲେ । ବୈଠକ ଦାୟିତ୍ୱରେ ଥିବା ମନ୍ତ୍ରୀ ପ୍ରଥମ ଦିନ ଜଣ ଜଣ କରି ମୁଖ୍ୟଙ୍କୁ ଡକାଇ କଥାବାର୍ତ୍ତା ହେଉଥାନ୍ତି, ଯଥା ସମୟରେ ସେ ଭରତ ଦାସଙ୍କୁ ଡକାଇଲେ ଓ କହିଲେ, "ସମୁଦାୟ ଯେତେ ଟଙ୍କା ଲୋଡ଼ା, ମୁଁ ଆଗରୁ ସବୁ ବୁଝି ରାଜାଙ୍କୁ କହି ରଖିଲେ ସେହି ଅନୁସାରେ କୋଷାଧ୍ୟକ୍ଷ ରାଜକୋଷରୁ ଅର୍ଥ ବାହାର କରିବେ । ତମର ଯୋଜନା କ'ଣ ? କେତେ ଦରକାର ?"

ଭରତ ଦାସ ତାଙ୍କ ଯୋଜନା ବିଷୟ କହିଲେ ଓ ମୋଟ ଦେଢ଼ଲକ୍ଷ ଟଙ୍କାରେ ତାହା କାର୍ଯ୍ୟକାରୀ ହୋଇ ପାରିବ ବୋଲି ଜଣାଇଲେ ।

"ଶୁଣ ଭରତ ଦାସେ । ରାଜାଙ୍କୁ ଯାହା ଦରକାର ବୋଲି କହିବ, ସେ ତା'ର ଅଧା ଦେବେ । ତେଣୁ ଭାବିଚିନ୍ତି ଦେଖି କେତେ କହିବା ଉଚିତ ।" ମନ୍ତ୍ରୀ ପରାମର୍ଶ ଦେଲେ ।

"ତେବେ କ'ଣ ତିନିଲକ୍ଷ କହିବା ଉଚିତ ?" ଭରତ ଦାସ ଚିନ୍ତିତ ଭାବରେ ପଚାରିଲେ ।

"ଓହୋ, ଦେଢ଼ଲକ୍ଷର ଦୁଇଗୁଣ ଯେ ତିନିଲକ୍ଷ, ଏ ହିସାବ କ'ଣ ତମକୁ ଜଣା ନାହିଁ ବୋଲି ମୁଁ ଭାବୁଛି ? ତେବେ ତମେ ଚାରିଲକ୍ଷ କହିପାର ।" ମନ୍ତ୍ରୀ ଅଳ୍ପ ହସି ଉତ୍ତର ଦେଲେ ।

ଭରତ ଦାସ କିଛି ବୁଝି ନପାରି ପଚାରିଲେ, "ମୁଁ ଚାରିଲକ୍ଷ କହିଲେ ରାଜା ଯଦି ଦୁଇଲକ୍ଷ ଦେବେ, ତେବେ ଆମର ଆବଶ୍ୟକ ଅର୍ଥଠୁଁ ମୁଁ ପଚାଶ ହଜାର ଅଧିକ ପାଇବି । ସେ ଅଧିକ ଅର୍ଥ କରିବି କ'ଣ ?"

"ଓହୋ ହୋ ! ପଚାଶ ହଜାର ଟଙ୍କା କ'ଣ ତମେ ମୁଁ ମିଶି ଖର୍ଚ୍ଚ କରିଦେଇ ପାରିବା ନାହିଁ ? ମୋର ତ ଆଗରୁ ଝିଅ

ବାହାଘର ଅଛି । ତମର ବି କିଛି ଥାଇ-ପାରେ !" ମନ୍ତ୍ରୀ କହିଲେ ।

ଭରତ ଦାସ ଖାଲି କହିଲେ, "ଆପଣଙ୍କ ପରାମର୍ଶ ପାଇଁ ଧନ୍ୟବାଦ । ଆଉ କିଛି କହିବେ ?"

"ନା, ନା, ଯିବା ପୂର୍ବରୁ ମୋ ସାଙ୍ଗରେ ଦେଖା କରି ଯିବେଟି ?" ମନ୍ତ୍ରୀ କହିଲେ ।

"ହଁ, ହଁ । ଆପଣଙ୍କ ସାଥିରେ ତ କାଲି ଦରବାରରେ ବି ସାକ୍ଷାତ ହେବ ।" ଏହା କହି ଭରତ ଦାସ ବାହାରି ଚାଲିଗଲେ । ସେ ବାଟରେ ଦେଖିଲେ ରବି ଗୈ ଧୁସ୍ୱି ମନ୍ତ୍ରୀଙ୍କ ଘରଆଡ଼େ ମୁହାଁଇଛନ୍ତି ।

ପରଦିନ ଦରବାରରେ ରାଜା ଜଣଜଣ କରି ଗ୍ରାମମୁଖ୍ୟଙ୍କୁ ଡକାଇ ସେମାନଙ୍କ ଆବଶ୍ୟକତା କଥା ପଚାରୁଥାନ୍ତି । ଯିଏ ଯାହା କହୁଥାଏ, ସେ ତାକୁ ସେହି ପରିମାଣ ଅର୍ଥ ଦେଇ ଦେଉଥାନ୍ତି । ରବି ଗୈ ଧୁସ୍ୱିଙ୍କ ପାଳି ପଡ଼ିଲା । ସେ ନିଜ ଗାଁ ପାଇଁ ଯୋଜନାର ଏକ ଚିତ୍ର ଦେଇ କହିଲେ, "ମହାରାଜ, ତିନିଲକ୍ଷ ଟଙ୍କା ହେଲେ ଯୋଜନାଟି ସୁରୁଖୁରୁରେ କାର୍ଯ୍ୟକାରୀ ହୋଇ ପାରିବ ।"

ଭରତ ଦାସ ଆଶ୍ଚର୍ଯ୍ୟ ହେଲେ । କାରଣ ସେ ଜାଣିଥିଲେ, ମଙ୍ଗଳପୁରର ସେ ଯୋଜନା ପାଇଁ ଲକ୍ଷେ ଟଙ୍କା ଅଟକଳ ହୋଇଥିଲା ।

ଏହାପରେ ଭରତ ଦାସଙ୍କ ପାଳି ପଡ଼ିଲା । ସେ ରାଜାଙ୍କ ପାଖକୁ ଯାଇ ନାଳ ଖୋଳା କଥା କହିସାରି ପଚିଶ ହଜାର ମୁଦ୍ରା ପାଇଁ ନିବେଦନ କଲେ ।





ରାଜା କିଛି ସମୟ ଭରତ ଦାସଙ୍କୁ ଅନାଇ ରହି କହିଲେ, "ହଉ, ଅପେକ୍ଷା କର ।"

ଏହାପରେ ସେ ଯେଉଁ ମୁଖ୍ୟମାନେ ଟଙ୍କା-ଥଳିମାନ ଗ୍ରହଣ କରିଥିଲେ, ସେ ସମସ୍ତଙ୍କୁ ସେସବୁ ଥଳି ଫେରାଇ ଦେବାକୁ କହିଲେ, କେବଳ ଅଳ୍ପ କେତେଜଣଙ୍କୁ ବାଦ୍ ଦେଇ । ତା'ପରେ ସେ ଘୋଷଣା କଲେ, "ଯେଉଁ-ମାନଙ୍କୁ ଟଙ୍କା ଥଳି ଫେରାଇ ଦେବାକୁ ପଡିଲା, ସେମାନେ ଏଣିକି ଆଉ ମୁଖ୍ୟ ନୁହନ୍ତି । ନୂତନ ମୁଖ୍ୟମାନେ ଶୀଘ୍ର ଯାଇ ଦାୟିତ୍ୱ ଗ୍ରହଣ କରିବେ ।"

ଏହାପରେ ସେ ଭରତ ଦାସଙ୍କୁ ଦୁଇଲକ୍ଷ ଟଙ୍କା ଦେଇ କହିଲେ, "ଗ୍ରାମର ଉନ୍ନତି ପାଇଁ ଯେପରି ଉଚିତ ମନେ କରିବ, ସେପରି ଖର୍ଚ୍ଚ କରିବ । ମୋତେ ହିସାବ ଦେବା ଦରକାର ନାହିଁ ।"

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମେ ଠିକ୍ ହିସାବ କରିଛ ? ପଚିଶ ହଜାରରେ କାମ ହୋଇଯିବ ?"

"ମହାରାଜ, ପ୍ରକୃତରେ ଆମର ଖର୍ଚ୍ଚ ହେବା କଥା ଦେଢ଼ ଲକ୍ଷ । କିନ୍ତୁ ଆମ ଗ୍ରାମବାସୀମାନେ ସମସ୍ତେ ଶ୍ରମଦାନ କରିବେ । କେହି ପାରିଶ୍ରମିକ ନେବେ ନାହିଁ । ସେ ଦୃଷ୍ଟିରୁ ପଚିଶ ହଜାର ବଞ୍ଚିଯିବ । ଦ୍ୱିତୀୟରେ ଗ୍ରାମର ସମ୍ପନ୍ନ ବ୍ୟକ୍ତିମାନେ ଚାନ୍ଦା ଭାବରେ ପଚିଶ ହଜାର ଦେବେ । ତେଣୁ ଆମ୍ଭ ପଚିଶ ହଜାର ଦେଲେ କାମ ହୋଇଯିବ ବୋଲି ମୋର ଆଶା ।" ଭରତ ଦାସ ଜଣାଇଲେ ।

ବେତାଳ ଟିକିଏ ଚୁପ୍ ରହି ପ୍ରଶ୍ନ କଲା: "ରାଜା ! ମୋର ଦୁଇଟି ସନ୍ଦେହ ରହିଛି । ରାଜା ଭୀମ ସିଂହ ତାହାଙ୍କ ଅଧିକାଂଶ ମୁଖ୍ୟଙ୍କଠାରୁ ଟଙ୍କା ଫେରାଇ ନେଲେ ଅଥଚ କେତେଜଣଙ୍କ ପାଖରୁ ଫେରାଇ ନେବା ଦରକାର ମନେ କଲେ ନାହିଁ ? ଦ୍ୱିତୀୟରେ ଭରତ ଦାସ ପଚିଶ ହଜାର ଚାହିଁବା ସତ୍ତ୍ୱେ ତାହାଙ୍କ ତାଙ୍କୁ ଦୁଇଲକ୍ଷ ଦେଇଦେଲେ ? ରାଜା ଭୀମସିଂହଙ୍କର ଖାମଖିଆଲି ମନୋଭାବ ଛଡ଼ା ଏହା ଆଉ କ'ଣ ? ଜାଣିଲେ ମୋ

ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଭୀମସିଂହ ଖାମ୍‌ଖିଆଲି ନଥିଲେ, ଥିଲେ ବିବେକୀ ଓ ଚତୁର । ଯେଉଁ ସାଧୁ ଯାଇ ଭରତ ଦାସ ଓ ରବି ଗୈ୍ରଧୁରୀଙ୍କ ଯୋଜନାମାନ ବତାଇଥିଲେ, ସମ୍ଭବତଃ ସିଏ ରାଜାଙ୍କରହିଁ ଜଣେ ସୁଦକ୍ଷ ଅମାତ୍ୟ । ତେଣୁ କାହାର କେତେ ଆବଶ୍ୟକ, ସେକଥା ରାଜା ଜାଣିଥାନ୍ତି । ଯେଉଁ ମନ୍ତ୍ରୀ ଅଧିକ ଆଦାୟ କରିବା ନିମନ୍ତେ ମୁଖ୍ୟମାନଙ୍କୁ ପରାମର୍ଶ ଦେଉଥିଲେ, ସିଏ ବି ରାଜାଙ୍କ ଜାଣତରେ ତାହା କରୁଥିଲେ । ରବି ଗୈ୍ରଧୁରୀଙ୍କ ଭଳି ଯେଉଁମାନେ ତାଙ୍କ କଥାରେ ପଡ଼ି ଅଧିକ ଟଙ୍କା ଦାବୀ କଲେ, ସେମାନେ ଦୁର୍ମତି ପରାୟଣ ବୋଲି ମୁଖ୍ୟ ପଦ ହରାଇଲେ । ଯେଉଁମାନେ ଯୋଜନାର ଅଟକଳଠୁଁ ବେଶି କିଛି ନଥିଲେ, ସେହିମାନଙ୍କୁ ଟଙ୍କା ରଖିବାକୁ ଦିଆଗଲା । ଭରତ ଦାସଙ୍କ କଥା ସ୍ୱତନ୍ତ୍ର । ସେ ଦେଶପ୍ରେମୀ ବୋଲି ଜଣା ପଡ଼ିଗଲା । ଆଗାମୀ ବର୍ଷଠୁଁ ରାଜା ସାହାଯ୍ୟ ନଦେଇ ଋଣ ଦେବେ ବୋଲି ଶୁଣି ସେ ବୁଝିଲେ ଯେ ରାଜକୋଷର ଅବସ୍ଥା ସ୍ୱଚ୍ଛଳ ନୁହେଁ । ଅତଏବ ସମସ୍ତେ ଯଥା ସମ୍ଭବ ଅଳ୍ପ ଖର୍ଚ୍ଚ କରିବା ଦରକାର । ସେଥିସକାଶେ ସେ ଗ୍ରାମର କାମ ପାଇଁ ଗ୍ରାମବାସୀମାନେ ଆଗଭର ହେବେ, ଏ ବ୍ୟବସ୍ଥା କରିଥିଲେ । ତାଙ୍କ ଭଳି ନୀତିପରାୟଣ ଓ ଦେଶପ୍ରେମୀ ମୁଖ୍ୟଙ୍କ ହାତରେ ଅର୍ଥ ନିରାପଦ ବୋଲି ରାଜା ତାଙ୍କୁ ଯଥେଷ୍ଟ ଅର୍ଥ ଦେଇ ଖର୍ଚ୍ଚ ପାଇଁ ସ୍ୱାଧୀନତା ଦେଲେ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)



# ସତର୍କ ରକ୍ଷୀ

ରାଜାଙ୍କର ଜଣେ ଦେହରକ୍ଷୀ ଦରକାର ହେଲେ । ଅନେକ ପ୍ରାର୍ଥୀଙ୍କ ଭିତରୁ ଶେଷକୁ ଚାରିଜଣଙ୍କୁ ମନୋନୀତ କରି ମନ୍ତ୍ରୀଙ୍କ ପାଖକୁ ପଠାଇଦେଲେ ସେନାପତି । ମନ୍ତ୍ରୀ ସେ ଚାରିଜଣଙ୍କ ଭିତରୁ ଜଣକୁ ବାଛିବା କଥା ।

ମନ୍ତ୍ରୀ ଦେଖିଲେ ବଳ, ଅସ୍ତ୍ର ଚାଳନା ଓ ବ୍ୟବହାରରେ ଚାରିଜଣଯାକ କୁଶଳୀ । ସେ କାହାକୁ ବାଛିବେ ? ଚାରିଜଣଙ୍କୁ ସେ ଗୋଟାଏ ପ୍ରଶ୍ନ କଲେ : "ରାଜା ବଣ ଭିତରେ ବାଟ ଭୁଲି ଗୋଟାଏ ଗଛ ମୂଳରେ ବସିଛନ୍ତି, ହଠାତ୍ ଜଣେ ଲୋକ ଆସି ତାଙ୍କୁ ପାହାରେ ପିଟି ଦେଲା । ତମେ କରିବ କ'ଣ ?"

"ମୁଁ ସେ ଲୋକ ଉପରକୁ ଡେଇଁପଡ଼ି ତାଙ୍କୁ ବନ୍ଦୀ କରିବ ।" ପ୍ରଥମ ଜଣକ କହିଲା ।

"ମୁଁ ତାକୁ ମାରି ଦେବି ।" ଦ୍ୱିତୀୟ ଜଣକ କହିଲା ।

"ମୁଁ ତାକୁ ମାରିବି ନାହିଁ, କିନ୍ତୁ ଯେଉଁ ହାତରେ ସେ ପିଟିଥିବ, ସେ ହାତଟି କାଟି ଦେବି ।" ତୃତୀୟ ପ୍ରାର୍ଥୀ ଉତ୍ତର ଦେଲା ।

ଚତୁର୍ଥ ପ୍ରାର୍ଥୀ କହିଲା, "ମନ୍ତ୍ରୀବର ! ମୁଁ ଯଦି ପାଖରେ ଥିବି, ତେବେ ସେ ଲୋକ ରାଜାଙ୍କ ପାଖକୁ ଆସିବ କେମିତି ଯେ ପାହାରେ ପିଟିବା ଯାଏ କଥାଯିବ ?"

ଚତୁର୍ଥ ପ୍ରାର୍ଥୀହିଁ ମନୋନୀତ ହେଲା ।






# ଅର୍ଥ ଅନର୍ଥ

ଥରେ ଜଣେ ରାଜା ତାଙ୍କ ଦରବାରରେ ଥିବା ଲୋକଙ୍କୁ ପ୍ରଶ୍ନ କଲେ, "ଏ ସଂସାରରେ ସବୁ ଅନର୍ଥର ମୂଳ କ'ଣ, ସେକଥା କିଏ କହି ପାରିବ? ଯିଏ ପାରିବ, ସିଏ ଶହେଟଙ୍କା ପୁରସ୍କାର ପାଇବ।"

ସଭାରେ ଥିବା ବୁଦ୍ଧିମାନ ଓ ଜ୍ଞାନୀ ବ୍ୟକ୍ତିମାନେ ଭିନ୍ନ ଭିନ୍ନ ଉତ୍ତର ଦେଲେ। କିଏ କହିଲା ସବୁ ଅନର୍ଥର ମୂଳ ମଣିଷର ଗର୍ବ; ଆଉ କିଏ କହିଲା ଅଜ୍ଞାନହିଁ ଅନର୍ଥର ମୂଳ। କିନ୍ତୁ ଏସବୁ ଉତ୍ତରରେ ରାଜା ସନ୍ତୁଷ୍ଟ ହୋଇ ପାରିଲେ ନାହିଁ।

ସେଦିନ ସଭାରେ ଜଣେ ଶିକ୍ଷକ ଉପସ୍ଥିତ ଥିଲେ। ସେ କହିଲେ, "ମଣିମା! ଏ ପ୍ରଶ୍ନର ଯଥାର୍ଥ ଉତ୍ତର ମୁଁ ଦେଇ ପାରିବି, କିନ୍ତୁ ପୁରସ୍କାରର ପରିମାଣ ଅତ୍ୟନ୍ତ କମ୍ ହେବାରୁ କହିବାକୁ ଉତ୍ସାହ ପାଉନାହିଁ।"

"ଆଚ୍ଛା, ପରିମାଣ ପାଞ୍ଚଶହ କରି ଦିଆଗଲା। କୁହ ଏଥର।" ରାଜା କହିଲେ।

"ଆଜ୍ଞା, ଅର୍ଥହିଁ ସବୁ ଅନର୍ଥର ମୂଳ!" ଏହା କହି ଶିକ୍ଷକ ଅର୍ଥ ଲୋଭ ଯୋଗୁଁ କେତେଲୋକ କେତେ ପ୍ରକାର ବିପଦରେ ପଡ଼ିଛନ୍ତି, ସେସବୁର କେତୋଟି ଦୃଷ୍ଟାନ୍ତ ଦେଲେ। ଦୃଷ୍ଟାନ୍ତ ହିସାବରେ ସେ ଯେଉଁ ଗଳ୍ପ ଗୁଡ଼ିକ କହିଲେ, ସେଗୁଡ଼ିକ ଯେପରି ହୃଦୟଗ୍ରାହୀ ଥିଲା, ଥିଲା ସେହିପରି ସରସ।

ରାଜା କହିଲେ, "ତମ ଉତ୍ତରରେ ମୁଁ ସନ୍ତୁଷ୍ଟ ହେଲି କି ନା, ତାହା ଭିନ୍ନ କଥା। ତେବେ ତୁମେ ଯେଉଁ ସୁନ୍ଦର ଗପ ଗୁଡ଼ିଏ କହିଲ, ସେପାଇଁ ପୁରସ୍କାର ତମର ପ୍ରାପ୍ୟ।" ଏହା କହି ରାଜା ଶିକ୍ଷକଙ୍କୁ ପାଞ୍ଚଶହ ଟଙ୍କା ଦେଲେ।

ହଠାତ୍ ସଭାରେ ଥିବା ଜଣେ ପଣ୍ଡିତ ପାଟି କରି ହସି ଉଠିଲେ।

ସୁରେନ୍ଦ୍ର

"କାହିଁକି ହସିଲ ?" ରାଜା ପ୍ରଶ୍ନ କଲେ ।

"ହସିବି ନାହିଁ ମହିମା ? ଏ ଭଦ୍ରଲୋକ କହୁଛନ୍ତି ଅର୍ଥହିଁ ସବୁ ଅନର୍ଥର ମୂଳ । ଅଥଚ ପୁରସ୍କାର ଅର୍ଥର ପରିମାଣ କମ୍ ହୋଇଥିବା ଯୋଗୁଁ ଇଏ ଆପତ୍ତି କରୁଥିଲେ ! ଯେଉଁ ଅର୍ଥ ପାଇଁ ଏହାଙ୍କର ଏତେ ଆସକ୍ତି, ସେହି ଅର୍ଥକୁ ଇଏ ଅନର୍ଥର ମୂଳ ବୋଲି କହୁଛନ୍ତି । ଏହା ପ୍ରତାରଣା ଛଡ଼ା ଆଉ କ'ଣ ହୋଇପାରେ ?" ପଣ୍ଡିତ ଉତ୍ତର ଦେଲେ ।

"ତମର କ'ଣ କହିବାର ଅଛି ?" ରାଜା ଶିକ୍ଷକଙ୍କୁ ପଚାରିଲେ ।

"ମହାରାଜ ! ଆପଣଙ୍କ ପ୍ରଶ୍ନର ଠିକ୍ ଉତ୍ତର ମୁଁ ଦେଇଛି । ଅର୍ଥ ପ୍ରତି ମୋର ଆସକ୍ତି ନାହିଁ ବୋଲି ମୁଁ କହି ନଥିଲି ।" ଶିକ୍ଷକ କହିଲେ ।

"ଯାହା ଅନର୍ଥର ମୂଳ, ତାହା ପ୍ରତି ଆସକ୍ତ ହୋଇ ଯିଏ ତାକୁ ଅର୍ଜନ କରେ, ସିଏ ମୂର୍ଖ !" ପଣ୍ଡିତ କହିଲେ ।

ଶିକ୍ଷକ ନମ୍ର ସ୍ୱରରେ ପଚାରିଲେ, "ପଣ୍ଡିତ ମହୋଦୟ, ଆପଣ ଅମର କି ?"

"ନା । କେହି ଅମର ନୁହେଁ ।" ପଣ୍ଡିତ ଉତ୍ତର ଦେଲେ ।

"ଆପଣ ଆଜି ମରିବାକୁ ପ୍ରସ୍ତୁତ କି ?"

"ରେପ୍ ! ମୁଁ କାହିଁକି ମରିବି ? ତମେ ମରୁନ ?" ପଣ୍ଡିତ ବିରକ୍ତ ହୋଇ ଏପରି କହିଲେ ।

ହସି ହସି ଶିକ୍ଷକ ଉତ୍ତର ଦେଲେ, "ମୁଁ ତ ମୂର୍ଖ । ତେଣୁ ମୃତ୍ୟୁ ଅନିବାର୍ଯ୍ୟ ଜାଣି ମଧ୍ୟ ଜୀବନ ପ୍ରତି ମୋର ଆସକ୍ତି ଅଛି ଓ ମୁଁ କଷ୍ଟରେ ବଞ୍ଚିବାକୁ ଚାହେଁ । ସେପାଇଁ ସାଧୁ ଉପାୟରେ ଉପାର୍ଜନ ବି କରିବାକୁ ଚାହେଁ । କିନ୍ତୁ ଆପଣ ପଣ୍ଡିତ ହୋଇ, ଜୀବନ ଅସ୍ଥାୟୀ ବୋଲି ଜାଣି ମଧ୍ୟ ଜୀବନ ପ୍ରତି ଏତେ ଆସକ୍ତ କାହିଁକି ?"

ସଭାରେ ସମସ୍ତେ ହସିଲେ । ପଣ୍ଡିତ ଚୁପ୍ ହୋଇଗଲେ ।





# ରତ୍ନ ବର୍ଷା

ଅନେକ ଯୁଗ ତଳର କଥା । କାଶୀ ନଗରୀରେ ଥିଲେ ଜଣେ ବିଦ୍ୱାନ ବ୍ରାହ୍ମଣ । ସେ ଗୋଟିଏ ଦୁର୍ଲଭ ମନ୍ତ୍ର ଜାଣିଥିଲେ । ପୂର୍ଣ୍ଣିମା ରାତିରେ କେତୋଟି ଗ୍ରହର ଯୋଗାଯୋଗ ବେଳେ ଆକାଶକୁ ଚାହିଁ ସେ ମନ୍ତ୍ରଟି ପଢ଼ିଲେ ଆକାଶରୁ ରତ୍ନ ବର୍ଷା ହୁଏ । ଅବଶ୍ୟ ଗ୍ରହ ନକ୍ଷତ୍ରର ସେଭଳି ଯୋଗାଯୋଗ ବହୁ ବର୍ଷରେ ଥରେ ଲେଖାଏଁ ହୁଏ ।

ବୁଦ୍ଧଦେବ ତାଙ୍କର ଗୋଟିଏ ପୂର୍ବଜନ୍ମରେ ଜଣେ ବ୍ରାହ୍ମଣ ସନ୍ତାନ ରୂପେ ଏହି ବିଦ୍ୱାନଙ୍କ ପାଖରେ ଶିଷ୍ୟ ରୂପେ ଥାନ୍ତି । ତାଙ୍କୁ ବୋଧିସତ୍ତ୍ୱ ବୋଲି ଅଭିହିତ କରାଯିବ ।

ଥରେ ଗୁରୁ ଶିଷ୍ୟ କୌଣସି ଦୂର ସ୍ଥାନ ଅଭିମୁଖେ ଯାତ୍ରା କରୁଥାନ୍ତି । ସେମାନଙ୍କୁ ଗୋଟିଏ ବଣ ଭିତର ଦେଇ ଯିବାକୁ ପଡ଼ିଲା ।

"ଗୁରୁଦେବ! ରାଜପଥ ଛାଡ଼ି ବଣ ଭିତର ଦେଇ ଯିବା ଉଚିତ ହେବ କି? ବଣ ଭିତରେ କେତେ ପ୍ରକାର ବିପଦର ସମ୍ଭାବନା ରହିଛି । ଆମେ ବଣ ଛାଡ଼ି ରାଜପଥକୁ ବାହାରିଯିବା ଚାଲନ୍ତୁ ।" ବୋଧିସତ୍ତ୍ୱ ପ୍ରସ୍ତାବ ଦେଲେ ।

"ବତ୍ସ! ବଣର ଏ ମୁଲକରେ ବାଘଭାଲୁ ନାହାନ୍ତି । ଅବଶ୍ୟ ଡାକୁ ଥାଇପାରନ୍ତି । କିନ୍ତୁ ଡାକୁ ଆମକୁ ନେଇ କରିବେ କ'ଣ? ଆମ ପାଖରେ କ'ଣ ଅଛି ଯେ ନେବେ? ରାଜପଥରେ ଗଲେ ଗନ୍ତବ୍ୟ ସ୍ଥାନରେ ପହଞ୍ଚିବାକୁ ଅନେକ ସମୟ ଲାଗିବ । ଭୟ କରିବା ଦରକାର ନାହିଁ ।" ବ୍ରାହ୍ମଣ କହିଲେ । ବୋଧିସତ୍ତ୍ୱ ନୀରବରେ ଗୁରୁଙ୍କୁ ଅନୁସରଣ କଲେ ।

ସେତେବେଳେ ସେ ବଣ ଏକାଧିକ ଡାକୁ ଦଳଙ୍କ ଆଡ୍ଡା ହୋଇଥାଏ । ଗୁରୁ ଶିଷ୍ୟ




ବଣ ଅତିକ୍ରମ କରିବା ପୂର୍ବରୁ ସଞ୍ଜ ହୋଇଗଲା। ହଠାତ୍ ଦୁହେଁ ଗୋଟାଏ ଡାକୁଦଳ ହାବୁଡ଼ରେ ପଡ଼ିଲେ।

ବ୍ରାହ୍ମଣ ଭୀତ ନ ହୋଇ ଡାକୁମାନଙ୍କୁ କହିଲେ, "ତମେ ଆମକୁ ଧରି ପାଇବ କ'ଣ? ଆମ ପାଖରେ ଖଣ୍ଡିଏ ଖଣ୍ଡିଏ ଅଧିକା ବସ୍ତ୍ର ଓ ଶାସ୍ତ୍ର ଛଡ଼ା ଆଉ କିଛି ନାହିଁ। ଆମକୁ ଛାଡ଼ିଦିଅ। ଆମର ଏବଂ ତମ ନିଜର ସମୟ ଅଯଥା ନଷ୍ଟ କରନାହିଁ।"

"ତମ ପାଖରେ କିଛି ନାହିଁ ବୋଲି ଆମେ ଜାଣିଛୁଁ। ତମ ଚେହେରା ଦେଖି ସେକଥା ବୁଝି ହେଉଛି। ତଥାପି ଆମେ ତମକୁ ଛାଡ଼ିବୁଁ ନାହିଁ। ଆମେ ବୋକା, ଏକଥା ଭାବନାହିଁ।" ଜଣେ ଡାକୁ କହିଲା।

"ଯଦି ଆମଠିଁ କିଛି ନାହିଁ ବୋଲି ଜାଣିଛ, ତେବେ ଆମକୁ ଅଟକାଉଛ କାହିଁକି?" ବ୍ରାହ୍ମଣ ପଚାରିଲେ।

"ଆମ ସର୍ଦ୍ଦାର ଆସୁଛନ୍ତି। ସେ ଆସିଲେ କହିବେ।"

କିଛି ସମୟ ପରେ ସର୍ଦ୍ଦାର ଆସି ପହଞ୍ଚିଗଲା ଓ ଗୁରୁ ଶିଷ୍ୟଙ୍କୁ ଭଲ କରି ନିରୀକ୍ଷଣ କଲା। ତା'ପରେ ସେ ନିଜ ଲୋକଙ୍କୁ କ'ଣ ଇଙ୍ଗିତ ଦେଲା।

ଡାକୁଦଳ ଗୁରୁଙ୍କୁ ବାନ୍ଧି ପକାଇ ଶିଷ୍ୟ ବୋଧିସତ୍ତ୍ୱଙ୍କୁ କହିଲେ, "ତମ ଗୁରୁ ଏଇଠି ରହିବେ। ତମେ ଲୋକାଳୟକୁ ଯାଅ। ଏକ ସପ୍ତାହ ମଧ୍ୟରେ ଏକ ସହସ୍ର ମୁଦ୍ରା ଧରି ଆସିବ। ଯଦି ନ ଆସିବ, ତେବେ ତମ ଗୁରୁଙ୍କ ଶିରଚ୍ଛେଦ କରାଯିବ।"

ବୋଧିସତ୍ତ୍ୱ ଡାକୁ ସର୍ଦ୍ଦାରକୁ କହିଲେ, "ମୋର ଦୃଢ଼ ବିଶ୍ୱାସ ମୁଁ ଏକ ସପ୍ତାହ ବିତିଯିବା ପୂର୍ବରୁହିଁ ଆବଶ୍ୟକୀୟ ଅର୍ଥ ଧରି ଆସି ପହଞ୍ଚିବି। ଆପଣମାନେ ମୋ ଗୁରୁଙ୍କ ପ୍ରତି ଦୁର୍ବ୍ୟବହାର କରିବେ ନାହିଁ, ଏତିକି ଅନୁରୋଧ।"

"ନା, ନା, ଏକ ସପ୍ତାହ ପର୍ଯ୍ୟନ୍ତ ତାଙ୍କୁ କେବଳ ବାନ୍ଧି ରଖାଯିବ। ଖାଇବାକୁ ପିଇବାକୁ ଦେବାରେ ତ୍ରୁଟି ହେବନାହିଁ।

ତେବେ ଜାଣିରଖ, ଯେମିତି ସମ୍ବାଦ ଶେଷ ହେବ, ତମ ଗୁରୁଙ୍କ ମୁଣ୍ଡଟି ଯିବ ।" ସର୍ଦ୍ଦାର ଜଣାଇ ଦେଲା ।

ବୋଧିସତ୍ତ୍ୱ ବିଦାୟ ନେବା ପୂର୍ବରୁ ଗୁରୁଙ୍କୁ ଚୁପ୍ ଚୁପ୍ କହିଲେ, "ଗୁରୁଦେବ, ଆପଣ ଟିକିଏ ଆଗରୁ କହୁଥିଲେ, ଆଜି ପୂର୍ଣ୍ଣିମା ରାତିରେ ଗ୍ରହମାନଙ୍କର ଦୁର୍ଲ୍ଲଭ ଯୋଗ ସମ୍ଭବ ହେବ ଓ ଆପଣ ଇଚ୍ଛା କଲେ ରତ୍ନବର୍ଷା କରିପାରିବେ । ମୋର ଗୋଟିଏ କଥା ମନେ ରଖନ୍ତୁ; ଆପଣ କଦାପି ସେ ବିଦ୍ୟା ଦେଖାଇବେ ନାହିଁ । ସେଥିରେ ହିତ ନ ହୋଇ ଭୀଷଣ ଅହିତହିଁ ହେବ ।"



ଏହାପରେ ବୋଧିସତ୍ତ୍ୱ ଚାଲିଗଲେ ।

କ୍ରମେ ରାତି ଘୋଟି ଆସିଲା । ଆକାଶରେ ପୂର୍ଣ୍ଣଚନ୍ଦ୍ର ଉଜ୍ଜ୍ୱଳ ହୋଇ ବିରାଜମାନ କରୁଥାନ୍ତି । ଗୁରୁ ଭାବିଲେ, "ମୁଁ ଯଦି ରତ୍ନବର୍ଷା କରାଇବି, ତେବେ ଏମାନେ ଅବାକ୍ ହେବେ ଓ ମୋର ସମ୍ମାନ କରିବେ । ବନ୍ଦୀଦଶାରୁ ବି ମୋତେ ସଙ୍ଗେ ସଙ୍ଗେ ମୁକ୍ତି ମିଳିବ । ଏ ମୁହୂର୍ତ୍ତ ଚାଲିଯିବା ପରେ ମୁଁ କିଛି କରିପାରିବି ନାହିଁ । ଶିଷ୍ୟ ଯଦି ଅର୍ଥ ସଂଗ୍ରହ କରି ନ ପାରେ ବା ଆସିବାକୁ ବିଳମ୍ବ କରେ, ତେବେ ମୋ ପ୍ରାଣ ନାଶ ହେବ!"

ତେଣେ ଶିଷ୍ୟଙ୍କ ପରାମର୍ଶ ବି ମନେ ପଡ଼ିଲା । ସେ କିଛି ସମୟ ପାଇଁ ଦ୍ୱନ୍ଦ୍ୱରେ ପଡ଼ିଲେ । ତେବେ ଶୀଘ୍ର ମନ ସ୍ଥିର କଲେ ।

ସେ ଡାକୁ ସର୍ଦ୍ଦାରକୁ ପଚାରିଲେ, "ଆରେ ଭାଇ, ତମେମାନେ ମୋତେ ବନ୍ଦୀ କରିଛ କ'ଣ ପାଇଁ ?"

"ପଣ୍ଡିତେ! ସେକଥା କ'ଣ ଆପଣଙ୍କୁ କହିବାକୁ ପଡ଼ିବ? ହଜାରେ ଟଙ୍କା ପାଇଁ ।" ଡାକୁ ସର୍ଦ୍ଦାର କହିଲା ।

ଗୁରୁ ହସିଲେ ଓ କହିଲେ, "ମାତ୍ର ହଜାରେ ଟଙ୍କା! ମୋତେ ବନ୍ଧନ ମୁକ୍ତ କର । ମୁଁ ଯାହା କହୁଛି ସେହି ଅନୁସାରେ କାମ କର । ତମେମାନେ ସମସ୍ତେ କୋଟିପତି ହୋଇଯିବ ।"

ଡାକୁ ସର୍ଦ୍ଦାର ଦେଖିଲା ପଣ୍ଡିତେ ଖସି ଯାଇପାରିବେ ନାହିଁ । ତେଣୁ ସେ ତାଙ୍କୁ ବନ୍ଧନ ମୁକ୍ତ କଲା । ତାଙ୍କ ନିର୍ଦ୍ଦେଶ



ଅନୁସାରେ ଯାହା ଫଳ ପୁଷ୍ପ ଆବଶ୍ୟକ ତାହା ଆଣିଦେଲ । ଗୁରୁ ଯଥା ସମୟରେ ସରୋବରରେ ସ୍ନାନ କରି ପୂଜାପାଠ କଲେ ଓ ଆକାଶକୁ ଅନାଇ ମନ୍ତ୍ର ପଢ଼ିଲେ । ଚାହୁଁ ଚାହୁଁ ଆକାଶରୁ ନାନାବିଧ ରତ୍ନ ଖସି ଆସିଲା ।

ଡାକୁମାନଙ୍କ ଆନନ୍ଦ ଓ ବିସ୍ମୟ କହିଲେ ନ ସରେ । ସେମାନେ ରତ୍ନତକ ଗୋଟାଇ ପକାଇଲେ । ଯେତେବେଳେ ବର୍ଷା ବନ୍ଦ ହେଲା, ସେମାନେ ଗୁରୁଙ୍କୁ ଧନ୍ୟବାଦ ଦେଇ ନିଜ ବାଟ ଧରିଲେ ।

ଅଧ ରାତିରେ ବଣ ଭିତରେ ଗୁରୁ ଏକୁଟିଆ କ'ଣ କରନ୍ତେ ? ସେ ଡାକୁମାନଙ୍କୁ ଅନୁସରଣ କଲେ ।

ସେମାନେ ଅଳ୍ପଦୂର ଯାଇଛନ୍ତି, ହଠାତ୍ ଆଉ ଗୋଟାଏ ଡାକୁଦଳ ପ୍ରଥମ ଡାକୁଦଳକୁ ଅଟକାଇ ଦେଲେ । ଏ ଦ୍ୱିତୀୟ ଡାକୁଦଳ ଅଧିକ ବଳବାନ ଥିଲେ । ପ୍ରଥମ ଡାକୁଦଳ ପାଖରୁ ରତ୍ନତକ ସେମାନେ ଛଡ଼ାଇ ନେବାକୁ ବସିବାରୁ ଡାକୁ ସର୍ଦ୍ଦାର କହିଲା, "ଯିଏ ରତ୍ନ ବର୍ଷା କରାଇ ପାରେ, ସେ ଲୋକ ପଛରେ ଚାଲିଛି । ତାହାକୁ ଧର; ଯେତେ ଇଚ୍ଛା ସେତେ ରତ୍ନ ପାଇବ । ଆମେ ତମ ସମଗୋତ୍ରିୟ । ଆମଠୁଁ ଛଡ଼ାଇବ କାହିଁକି ?"

ଦ୍ୱିତୀୟ ଡାକୁଦଳ ପ୍ରଥମ ଡାକୁଦଳକୁ ଅଟକ ରଖି ବ୍ରାହ୍ମଣଙ୍କୁ ଏହାର ସତ୍ୟତା ସମ୍ପର୍କରେ ପଚାରିଲେ । ବ୍ରାହ୍ମଣ ରତ୍ନ ବର୍ଷା କରାଇଥିବା ବିଷୟ ସ୍ୱୀକାର କଲେ, କିନ୍ତୁ ସଙ୍ଗେ ସଙ୍ଗେ କହିଲେ କି ଆଉ ଥରେ ବର୍ଷା କରାଇଲା ଭଳି ଶକ୍ତି ତାଙ୍କର ନାହିଁ । ସେ ଲଗ୍ନ ଅତୀତ ହୋଇଗଲାଣି ।

ବ୍ରାହ୍ମଣଙ୍କର ଏ କୈଫିୟତ୍ ଡାକୁମାନଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ସେମାନେ ରତ୍ନବର୍ଷା କରାଇବା ପାଇଁ ବାରମ୍ବାର କହିଲେ ଓ ଧମକ ଦେଲେ । ବ୍ରାହ୍ମଣ ଯେତେବେଳେ ସମ୍ପୂର୍ଣ୍ଣ ଭାବରେ ନିଜ ଅକ୍ଷମତା ପ୍ରକାଶ କଲେ, ସେମାନେ ତାଙ୍କୁ ହତ୍ୟା କଲେ ।

ତା'ପରେ ସେମାନେ ପ୍ରଥମ ଡାକୁଦଳଠୁଁ ରତ୍ନତକ ଛଡ଼ାଇ ନେବାକୁ ଚେଷ୍ଟା କଲେ । ଦୁଇଦଳ ଭିତରେ ଭୀଷଣ ସଂଘର୍ଷ ହେଲା ।



ଦ୍ୱିତୀୟ ଡାକୁଦଳ ଅଧିକ ବଳଶାଳୀ ଥିବାରୁ ପ୍ରଥମ ଦଳର ସବୁ ଡାକୁଙ୍କୁ ମାରିପକାଇ ସେମାନେ ରତ୍ନତକ ଅଧିକାର କଲେ ।

ବିଜୟୀ ଡାକୁଦଳର ନେତା ଓ ଉପନେତା ପରସ୍ପର ଭୀଷଣ ଈର୍ଷା କରୁଥିଲେ । ଦୁର୍ମୂଲ୍ୟ ରତ୍ନରାଶିର ମାଲିକାନା ନିମନ୍ତେ ଉଭୟଙ୍କ ଭିତରେ ଝଗଡ଼ା ହେଲା । ସାରା ଡାକୁଦଳ ଦୁଇଭାଗ ହୋଇଯାଇ ଲଢ଼େଇ କଲେ । ନେତା ଉପନେତାଙ୍କ ସମେତ ସେ ଲଢ଼େଇରେ ପ୍ରାୟ ସମସ୍ତେ ମଲେ । କୌଣସି ମତେ ବଞ୍ଚି ରହିଲେ ମାତ୍ର ଦୁଇଜଣ ଡାକୁ ।

"ଚାଲ, ଆମେ ରତ୍ନତକ ଭାଗ କରିନେବା ।" ଦୁହେଁ ଦୁହିଁଙ୍କୁ କହିଲେ । ତା'ପରେ ଦୁଇଟି ବଡ଼ ବଡ଼ ଥଳିରେ ରତ୍ନତକ ପୂରାଇ ଦୁଇ ଡାକୁ ଯାଇ ଗୋଟାଏ ବଡ଼ ଗଛମୂଳରେ ବିଶ୍ରାମ କଲେ । ସେତେବେଳକୁ ଦୁହିଁଙ୍କୁ ଭୋକ ଲାଗୁଥାଏ । ଜଣେ ଡାକୁ ଗଛ ଉପରେ ବସି ରତ୍ନଥଳି ଜଗିଲା । ଅନ୍ୟ ଜଣକ କିଛି ଖାଦ୍ୟ ଆଣିବା ନିମନ୍ତେ ବଣ ବାହାରେ ଥିବା ଗାଁକୁ ଗଲା ।

ଦୁଇଘଣ୍ଟା ପରେ ଖାଦ୍ୟ ଦ୍ରବ୍ୟ ଧରି ଦ୍ୱିତୀୟ ଡାକୁ ଫେରିଆସି ପହଞ୍ଚିବା ମାତ୍ରେ ପ୍ରଥମ ଡାକୁ ତା' ଉପରକୁ ଡେଇଁ ପଡ଼ି ଛୁରିକା ଦ୍ୱାରା ତାକୁ ହତ୍ୟା କଲା । କାରଣ ତାହା ଦ୍ୱାରା ସବୁ ସମ୍ପତ୍ତି ତା'ର ହୋଇଯିବ । ଏହାପରେ ସେ ମୃତ ଡାକୁ ଆଣିଥିବା ଖାଦ୍ୟ ଦ୍ରବ୍ୟତକ ଆହାର କଲା ।

ମୃତ ଡାକୁ ମଧ୍ୟ ସବୁ ରତ୍ନର ମାଲିକ ନିଜେ ହେବା ଲାଳସାରେ ସେ ଖାଦ୍ୟରେ ବିକଟ ବିଷ ମିଶାଇ ଆଣିଥିଲା । ତାହା ଆହାର କରି ତା'ର ହତ୍ୟାକାରୀ ମଧ୍ୟ ମରି ଶୋଇଲା ।

ତେଣେ ବୋଧିସତ୍ତ୍ୱ ଜନପଦକୁ ଯାଇ ଗୋଟିଏ ଦିନ ଭିତରେ ସହସ୍ର ମୁଦ୍ରା ସଂଗ୍ରହ କରି ପାରିଲେ ଓ ବଣକୁ ଲେଉଟି ଆସିଲେ । ଯେଉଁଠାରେ ସେ ଓ ତାଙ୍କ ଗୁରୁ ଡାକୁଦଳ ହାବୁଡ଼ରେ ପଡ଼ିଥିଲେ, ସେଠାରେ ପହଞ୍ଚି ସେ ଦେଖିଲେ କି ଗୁରୁ ମରି ପଡ଼ିଛନ୍ତି । "ହାୟ ଗୁରୁଦେବ! ଆପଣ ମୋ ପରାମର୍ଶ ଭୁଲିଯାଇ ଆକାଶରୁ ରତ୍ନବର୍ଷା କରାଇଲେ କି?" ଏହା

କହି ବୋଧିସତ୍ତ୍ୱ ବଡ଼ ଦୁଃଖିତ ମନରେ ଶୁଖିଲା କାଠପତ୍ର ସଂଗ୍ରହ କରି ଗୁରୁଙ୍କ ଶବ ଦାହ କଲେ ଓ ଶ୍ରଦ୍ଧାପ୍ଳୁତ ଚିତ୍ତରେ ତାଙ୍କ ଆତ୍ମା ଉଦ୍ଦେଶ୍ୟରେ ପୁଷ୍ପାଞ୍ଜଳି ଦେଲେ ।

ଏହାପରେ କେଇ ପାଦ ମାତ୍ର ଆଗକୁ ଯାଇ ସେ ଡାକୁ ସର୍ଦ୍ଦାର ତଥା ତା'ର ସବୁ ଅନୁଚର ମରି ପଡ଼ିଥିବାର ଦେଖିଲେ । ଆହୁରି କିଛି ଦୂର ଅଗ୍ରସର ହେବା ପରେ ସେ ଦେଖିଲେ ଆହୁରି ଗୁଡ଼ିଏ ଡାକୁ ମରି ପଡ଼ିଛନ୍ତି । "ରତ୍ନଥଳି ତେବେ ଗଲା କୁଆଡ଼େ ?" ସେ ଏଇଆ ଭାବି ଭାବି ବୁଲିଛନ୍ତି, ଗଛ ମୂଳରେ ରତ୍ନ ଥଳି ଦୁଇଟି ଥୁଆ ହୋଇଥିବାର ଦେଖିଲେ । ପାଖରେ ଶେଷ ଡାକୁ ଦୁଇଜଣ ମରି ପଡ଼ିଥାନ୍ତି ।

ବୋଧିସତ୍ତ୍ୱ ରତ୍ନଥଳି ଦୁଇଟି ଧରି କିଛି ଦୂର ଯିବା ପରେ ଦଳେ ତୀର୍ଥଯାତ୍ରୀଙ୍କୁ ଭେଟିଲେ । ସେମାନଙ୍କ ଭିତରେ ତାଙ୍କର ପରିଚିତ କେତେଜଣ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ ।

ବଣ ଭିତରେ ଘଟିଥିବା ସବୁ ଘଟଣା ବୋଧିସତ୍ତ୍ୱ ଅନୁମାନ କରି ନେଇଥିଲେ । ସେ ସେ ତୀର୍ଥଯାତ୍ରୀମାନଙ୍କୁ ସବୁ କହିଲେ । "ବିଦ୍ୟାର ଭୁଲ ପ୍ରୟୋଗ କରିଥିବାରୁ ମୋ ଗୁରୁ ଅକାଳ ମୃତ୍ୟୁ ବରଣ କଲେ । ଲୋଭ କବଳରେ ପଡ଼ି ଡାକୁମାନେ ବିନାଶ ଗଲେ । ଏକ ପକ୍ଷରେ ବିବେକ ଓ ଧୈର୍ଯ୍ୟର ଅଭାବ ଏବଂ ଅନ୍ୟ ପକ୍ଷରେ ଲୋଭ, ଇର୍ଷା ଏବଂ ହିଂସା ସମସ୍ତଙ୍କ ବିନାଶ ପାଇଁ ଦାୟୀ ।"

କେବଳ ଯେ ତୀର୍ଥଯାତ୍ରୀ ଦଳ ମୁଗ୍ଧ ଭାବରେ ତାଙ୍କ କଥା ଶୁଣିଲେ, ତାହା ନୁହେଁ । ଅରଣ୍ୟର ଦେବୀମାନେ ମଧ୍ୟ ଅଦୃଶ୍ୟ ଭାବରେ ବୋଧିସତ୍ତ୍ୱଙ୍କ ମହତ୍ତ୍ୱବାଣୀ ଶୁଣି ତାଙ୍କ ପ୍ରତି ଶୁଭେଚ୍ଛା ଜ୍ଞାପନ କରୁଥାନ୍ତି । ବୋଧିସତ୍ତ୍ୱ ତୀର୍ଥଯାତ୍ରୀମାନଙ୍କ ସାହାଯ୍ୟରେ ରତ୍ନଥଳି ନଗରୀକୁ ନେଇଯାଇ ନାନା ପ୍ରକାର କଲ୍ୟାଣକର କାର୍ଯ୍ୟରେ ତାକୁ ନିୟୋଗ କଲେ ।





ଭାରତ-କାହାଣୀ

# ବିଦ୍ରୋହର ଅବସାନ

ବିଦ୍ରୋହୀମାନଙ୍କ ସେନାପତି ଭାବରେ ସବୁଠାରୁ ଅଧିକ ଦକ୍ଷତା ଦେଖାଇଥିଲେ ତାନ୍ତିଆଟୋପି । ନାନାସାହେବଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ସେ ଅସ୍ତ୍ରଧାରଣ କଲେ । ତାଙ୍କ ପ୍ରଭାବରେ ଆସି ଜଣେ ଭୀରୁ ମଧ୍ୟ ସାହସୀ ସୈନିକରେ ପରିଣତ ହୋଇ ପାରୁଥିଲା ।

ଥରେ କାନପୁର ଉପକଣ୍ଠରେ ତାନ୍ତିଆ ଟୋପି ଇଂରେଜ୍ ସୈନିକଙ୍କୁ ମୁକାବିଲା କରି ସେମାନଙ୍କୁ ବହୁ ଦୂରକୁ ତଡ଼ିନେଇ ଗଲେ । ରାତି ହୋଇଯିବାରୁ ଅନ୍ଧାରରେ ଆତ୍ମଗୋପନ କରି ଇଂରେଜ୍‌ମାନେ ସେଥର ବର୍ତ୍ତିଗଲେ । ସେ ପରାଜିତ ଇଂରେଜ୍ ବାହିନୀର ସେନାପତି ଉଇନଧାମ୍ ଇଂରେଜ୍ ବାହିନୀର ସର୍ବୋଚ୍ଚ ସେନାପତି ସାର୍ କଲିନ୍ କ୍ୟାମ୍‌ବେଲ୍‌ଙ୍କ ପାଖକୁ ଖବର ଦେଲେ ।





କଲିନ କ୍ୟାମ୍‌ବେଲ୍ ସଙ୍ଗେ ସଙ୍ଗେ ଆସି କାନ୍‌ପୁରରେ ପହଞ୍ଚିଲେ । ସେ ନିଜ ସାଙ୍ଗରେ ଆଣିଥିଲେ ଗୋଟିଏ ବିଶାଳ ସୈନ୍ୟବାହିନୀ । ସେତେବେଳେ ତାନ୍ତିଆ ଟୋପି କାଲ୍‌ପି ସହରରେ ଶିବିର ସ୍ଥାପନ କରିଥାନ୍ତି । ସେ କ୍ୟାମ୍‌ବେଲ୍‌ଙ୍କ ସୈନ୍ୟବାହିନୀ ସହ ଦାରୁଣ ଯୁଦ୍ଧ କଲେ । ତାଙ୍କ ସାହସ ଓ ଯୁଦ୍ଧ କୌଶଳ ଇଂରେଜ୍‌ମାନଙ୍କୁ ବିସ୍ମିତ କଲା ।



ଥରେ ଅସୁସ୍ଥ ଅବସ୍ଥାରେ ତାନ୍ତିଆ ଟୋପି ତାଙ୍କର ଜଣେ ବନ୍ଧୁଙ୍କ ଘରେ ଆଶ୍ରା ନେଲେ । ବନ୍ଧୁଟି ଗୋଟିଏ ଛୋଟିଆ ରାଜ୍ୟର ରାଜା । ସେ ତାନ୍ତିଆ ଟୋପିଙ୍କୁ ଯଥୋଚିତ ସମ୍ବର୍ଦ୍ଧନା ଜଣାଇଲେ । ବିଦେଶୀ କବଳରୁ ଭାରତକୁ ଓ ରାଜାମାନଙ୍କୁ ମୁକ୍ତ କରିବାକୁ ଲଢ଼େଇ କରୁଥିବା ତାନ୍ତିଆ ଟୋପି ରାଜାଙ୍କ ସୌଖ୍ୟ ଉପରେ ବିଶ୍ୱାସ ରଖିଥିଲେ ।

କିନ୍ତୁ ଉକ୍ତ ରାଜାଟି ତାଙ୍କ ସହ ବିଶ୍ୱାସ-ଘାତକତା କଲେ । ଦିନେ ତାନ୍ତିଆ-ଟୋପି ରାଜାଙ୍କ ଉଦ୍ୟାନରେ ବିଶ୍ରାମ କରୁଥିବା ଅବସ୍ଥାରେ କୋମ୍ପାନୀର କେତେଜଣ ସୈନିକ ହଠାତ୍ ତାଙ୍କ ଉପରକୁ ଲଂଫ ଦେଇ ତାଙ୍କୁ ବନ୍ଦୀ-କଲେ । କହିବା ବାହୁଲ୍ୟ ଯେ ନିଜ ସ୍ୱାର୍ଥ ସିଦ୍ଧି ନିମନ୍ତେ ତାନ୍ତିଆଟୋପିଙ୍କୁ ଆଶ୍ରୟ ଦେଇଥିବା ରାଜା ଜଣଙ୍କ ନିଜ ଅତିଥିଙ୍କୁ ଶତ୍ରୁ ହାତକୁ ଟେକିଦେଲେ ।





"ମୁଁ ଇଂରେଜମାନଙ୍କ ପ୍ରଜା ନୁହେଁ ଯେ ଇଂରେଜମାନେ ମୋତେ ବିଚାର କରିବାର ଅଧିକାରୀ ।" ଇଂରେଜମାନେ ତାନ୍ତିଆଟୋପିଙ୍କୁ ଫାଶି ମଞ୍ଚକୁ ନେଇ-ଗଲାବେଳେ ସେ ଉଦାତ୍ତ କଣ୍ଠରେ ଏକଥା କହିଥିଲେ । ସେ ଆହୁରି କହିଲେ, "ଇଂରେଜମାନେ ଆମ ଘର ଭାଙ୍ଗି ପଶିଛନ୍ତି । ସେମାନେ ଡାକୁ । ଆମେ ଡାକୁ ତଡ଼ିବାକୁ ଗଲାବେଳକୁ ଆମକୁ ଅପରାଧୀ କହି ଦଣ୍ଡ ଦେଉଛନ୍ତି !"

ତାନ୍ତିଆ ଟୋପିଙ୍କ ପ୍ରାଣଦଣ୍ଡ ନାନା-ସାହେବ୍‌ଙ୍କୁ ଅତ୍ୟନ୍ତ ବ୍ୟଥିତ କଲା । ତଥାପି ସେ ବିଦ୍ରୋହ ଚାଲୁ ରଖିଲେ । ଯେତେବେଳେ ଦେଖିଲେ ଯେ ବିଜୟର ସମ୍ଭାବନା କ୍ଷୀଣ, ସେତେବେଳେ ସେ ନେପାଳର ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ଇଂରେଜ୍‌ମାନେ ତାଙ୍କୁ ଧରିବାକୁ ସବୁମତେ ଚେଷ୍ଟା କରି ବିଫଳ ହେଲେ । ତାଙ୍କର ଶେଷ ଜୀବନ ବିଷୟରେ ଇତିହାସ ନୀରବ ।





ବିଦ୍ରୋହର ଆଉ ଜଣେ ପ୍ରଖ୍ୟାତ ବୀର ହେଲେ ରାଜା କୁନ୍‌ୱାର୍ ସିଂହ । ସେ ଥିଲେ ବିହାର ଅନ୍ତର୍ଭୁକ୍ତ ଜଗଦୀଶପୁର ରାଜ୍ୟର ରାଜା । ପଞ୍ଚସ୍ତରି ବର୍ଷ ବୟସରେ ସେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ସେ ତାଙ୍କ ସୈନ୍ୟମାନଙ୍କୁ ଛକାପଞ୍ଝା ଯୁଦ୍ଧବିଦ୍ୟା ଶିଖାଇଲେ । ଗଛ ଆଢୁଆଳରୁ, ଗୁଂଫା ଭିତରୁ ତାଙ୍କ ସୈନ୍ୟମାନେ ଇଂରେଜ୍‌ମାନଙ୍କୁ ଆକ୍ରମଣ କରୁଥାନ୍ତି ।

ସେ ଜଣେ ତରୁଣ ଭଳି ତେଜରେ ଯୁଦ୍ଧ କରୁଥାନ୍ତି । ତାଙ୍କ ତେଜୀୟାନ୍ ଶ୍ୱେତ ଅଶ୍ୱ ଶତ୍ରୁ ପକ୍ଷକୁ ଚମକାଇ ଦେଉଥାଏ । ଥରେ ଶତ୍ରୁ ପକ୍ଷର ଗୁଳି ଆସି ତାଙ୍କ ଡାହାଣ ହାତରେ ବାଜିଲା । ସେ ତେଣିକି ବାମ ହାତରେ ଅସି ଚାଳନା କରି ଓ ଆହତ ରକ୍ତାକ୍ତ ହାତରେ ଘୋଡ଼ାକୁ ସମ୍ଭାଳି ସାରା ଦିନ ଯୁଦ୍ଧ କଲେ ।





ତେବେ କେଇଦିନ ପରେ କୁନ୍‌ୱାର୍, ବୁଝିଲେ ଯେ ତାଙ୍କ ଆଘାତ ବିଷେଇ ଯାଇଛି ଓ ତାହା ଦ୍ୱାରା ସାରା ଦେହର ରକ୍ତ ପ୍ରବାହ ବିଷାକ୍ତ ହୋଇଯିବ । ସେ ଗଙ୍ଗା କୂଳରେ ଠିଆ ହୋଇ ବାମ ହାତରେ ଅସି ଧରି ଡାହାଣ ବାହୁକୁ ଏକା ଚୋଟରେ କାଟିଦେଲେ । ବାହୁ ଯାଇ ଗଙ୍ଗା ଗର୍ଭରେ ପଡ଼ିଲା । "ମା ଗଙ୍ଗା ! ମୋର ଏ ଭେଟି ଗ୍ରହଣ କର !" ସେ କହିଲେ ।

ତେବେ ଆତ୍ମକୃତ ଅସ୍ତ୍ରୋପଚାରର ପ୍ରକୋପରୁ ସେ ଶଯ୍ୟାଶାୟୀ ହେଲେ । କେତେ ଘଣ୍ଟା ପରେ ତାଙ୍କ ଜ୍ଞାନ ଲୁପ୍ତ ହେଲା ଓ ସେ ମୃତ୍ୟୁ ବରଣ କଲେ । ସଙ୍ଗେ ସଙ୍ଗେ ତାଙ୍କ ସାନ ଭାଇ ଅମରସିଂହ ସୈନ୍ୟବାହିନୀର ନେତୃତ୍ୱ ଗ୍ରହଣ କରି ଇଂରେଜ୍‌ମାନଙ୍କ ସହ ଲଢିଲେ । ଭୀଷଣ ଯୁଦ୍ଧ ପରେ ତାଙ୍କ ଦୁର୍ଗର ପତନ ହେଲା ।





ଜଗଦୀଶପୁର ନଅର ଭିତରେ ରାଜ-ପରିବାରର ନାରୀମାନେ କମାଣ ଆଗରେ ଠିଆ ହୋଇ ନିଜେ ନିଜେ ବାରୁଦରେ ଅଗ୍ନି ସଂଯୋଗ କରି ପ୍ରାଣ ବିସର୍ଜନ ଦେଲେ । ଅମର ସିଂହଙ୍କୁ ଶତ୍ରୁମାନେ ଧରିପାରିଲେ ନାହିଁ । କିନ୍ତୁ ସେ କୁଆଡ଼େ ଗଲେ ଜଣାଗଲା ନାହିଁ ।

୧୮୫୭ର ବିରାଟ ବିଦ୍ରୋହ ଉପରେ ଯବନିକା ପଡ଼ିଲା ।



# ପୋତା ଧନ!

ଆଲି ଥିଲା ଖାନ୍‌ଦାନ୍ ଘରର ପିଲା । କିନ୍ତୁ ଦୁର୍ଯୋଗକୁ ସେ ଜନ୍ମହେବା ବେଳକୁ ତା' ପରିବାର ଗରିବ ହୋଇ ଯାଇଥିଲେ । ସେ ଅଳ୍ପ ବୟସର ହୋଇଥାଏ, ତା' ବାପା ମା ମରିଗଲେ ।

ଆଲି ବିଶେଷ ପାଠଶାଠ ପଢ଼ି ନଥାଏ କି କୌଣସି କାମରେ ତାଲିମ ପାଇ ନଥାଏ । ଘରେ ଯାହା ମୂଲ୍ୟବାନ ଜିନିଷ ପତ୍ର ଥାଏ, ଗୋଟିଏ ପରେ ଗୋଟିଏ ସେସବୁ ବିକି କରି ସେ ଚଳି ଯାଉଥାଏ । କ୍ରମେ ସେସବୁ ଶେଷ ହେଲା । ତେବେ ଆଲି ମନରେ କୌଣସି ଉତ୍କଣ୍ଠା ନଥାଏ ।

ଆଲିର ସ୍ୱଭାବ ଥିଲା ଖୁବ୍ ଭଲ । ସହରର ଲୋକେ ତାକୁ ସ୍ନେହ କରୁଥାନ୍ତି । ଆଲି ନିଜ ପାଇଁ କାମଦାମ କିଛି ନକରି ସମସ୍ତଙ୍କ କାମରେ ଖଟୁଥାଏ । ଆଜି ଯଦି କାହାଘରେ ବାହାଘର ହେଉଛି, ସେଠି ଦେଖିବ ଆଲିକୁ । କାଲି ଯଦି କିଏ ବେମାର ପଡ଼ୁଛି, ଆଲି ଯାଇ ତା' ପାଇଁ ବୈଦ୍ୟ ଡାକିବାକୁ ବା ଔଷଧପତ୍ର ଯୋଗାଡ଼ କରିବାକୁ ହାଜର ।

ଫଳରେ ସେ କୌଣସି ଅସୁବିଧାରେ ପଡିଲେ ଅନ୍ୟମାନେ ତାକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ ବୋଲି ସେ ବୁଝୁଥାଏ ।

ସେ ଚଳୁଥାଏ କିପରି ? ତା' ନିଜ ବାସଘରକୁ ଛାଡ଼ିଦେଲେ ଆଉ ଗୋଟାଏ ବଡ଼ ଘର ତା'ର ସମ୍ପତ୍ତି ହିସାବରେ ଅବଶିଷ୍ଟ ଥାଏ । ସେ ଘରଟି ଭଡ଼ାରେ ଲଗିଥାଏ । ସେଥିରୁ ଯାହା ମିଳୁଥାଏ, ତାହା ଖାଲି ତା' ନିଜ ପାଇଁ ଯେ ଯଥେଷ୍ଟ ଥିଲା, ସେତିକି ନୁହେଁ, ଅଧାଅଧି ସେ ସଞ୍ଚୟ ବି କରୁଥିଲା ।

ସେ ନିଜେ ଯେଉଁଘରେ ରହୁଥାଏ, ତାହା ଭାଙ୍ଗି ଆସୁଥାଏ । ଅଧାଘର ଉପରେ ଛପର



ନଥାଏ । ତେବେ ସେ ଯଥେଷ୍ଟ ଟଙ୍କା ହେଲେ ସମୁଦାୟ ଘରକୁ ଭାଙ୍ଗି ନୂଆ ଘର ତୋଳିବ, ଏହି ଯୋଜନା କରିଥାଏ ।

ନିଜ ଭଙ୍ଗା ଘରେ ଟଙ୍କା ରଖିବା ନିରାପଦ ହେବନାହିଁ ବୋଲି ସେ ଘର ପଛପଟେ ବାଡ଼ ତଳେ ଠାଏଁ ଗାତ ଖୋଳି ନିଜ ସଞ୍ଚୟ ଲୁଚାଇ ରଖିଥାଏ । ପ୍ରତିମାସ ରାତିରେ ଥରେ ଗରାଟି ଖୋଳି ବାହାର କରେ ଓ ସେ ମାସର ସଞ୍ଚୟ ତହିଁ ଭିତରେ ପକାଇ ଦିଏ ।

ଏହିପରି ଭାବରେ ସେ ସଞ୍ଚିଥାଏ ପାଞ୍ଚଶହ ମୋହର ।

ତା' ଘର ପାଖରେ ଥାଏ ଜଣେ ଠକ ଯୁବକ । ତା'ର ପଇସାପତ୍ର ଅଭାବ ନଥାଏ । କିନ୍ତୁ ଲୋଭର ବି ସୀମା ନଥାଏ । ସେ ଭାବିଲା, ଆଲି ପ୍ରତିମାସ ଯେତିକି ଟଙ୍କା ପାଉଛି, ସେତିକି କେବେ ଖର୍ଚ୍ଚ କରୁନାହିଁ । ରଖୁଛି କେଉଁଠି ?

ଠକ ଆଲି ସହ ବନ୍ଧୁତା ଜମେଇଲା । ଆଲି ସରଳ ଭାବରେ ତାକୁ ବନ୍ଧୁ ଭଳି ସମ୍ମାନ ଶ୍ରଦ୍ଧା ଦେଖାଉଥାଏ । ସେ ଯେତେ-ବେଳେ ଇଚ୍ଛା ଆସି ଆଲି ଘରେ ପହଞ୍ଚି ଯାଉଥାଏ । ଏହିପରି ସମ୍ପର୍କ ରଖିବା ଭିତରେ ସେ ବୁଝିଗଲା ଆଲି କେଉଁଠାରେ ଟଙ୍କା ଗରା ପୋତିଥାଏ ।

ଦିନେ ରାତିରେ ଆଲି ଅନ୍ୟତ୍ର ଥିବାର ଜାଣି ସେ ତା ଘର ହତାରେ ପଶି ଟଙ୍କା ଗରା ଖୋଳି ବାହାର କରି ନେଲା । ଘରକୁ ଯାଇ ଗଣି ଦେଖିଲା ପାଞ୍ଚଶହ ମୋହର ! ତା ଆନନ୍ଦ କଥା କହିଲେ ନ ସରେ ।

ଏହାର କେଇଦିନ ପରେ ଆଲି ଗରା ଖୋଳିବାକୁ ଯାଇ ଦେଖେ ତ ତାହା ଆଉ ନାହିଁ ! ଚୋର କିଏ ହୋଇଥାଇ ପାରେ, ସେକଥା ବୁଝିବାକୁ ତାକୁ ଅସୁବିଧା ହେଲ ନାହିଁ ।

ଆଲି ଯେପରି ତାକୁ ସନ୍ଦେହ ନ କରିବ, ସେଥିପାଇଁ ଠକ ଟୋକା ତା' ସହ ଏକାଭଳି ମଧୁର ସମ୍ପର୍କ ରଖିଥାଏ ଓ ତା' ଘରକୁ ବାରମ୍ବାର ଆସୁଥାଏ । ଦିନେ ଠକ ଆସୁଛି ଜାଣି ଆଲି କିଛି ନ ଜାଣିଲା ଭଳି ଦୁଆର

ଆଡ଼କୁ ପିଠି କରି ବସି ଆଗରେ ଶହେଟି ମୁଦ୍ରା ଥୋଇ ଗଣୁଥାଏ ଓ ନିଜକୁ ନିଜେ କହୁଥାଏ, "ପାଞ୍ଚଶହ ସହିତ ଏ ଶହେ ମିଶିଲେ ହେବ ଛଅଶହ । ଆଗାମୀ କାଲି ରାତିରେ ଗର୍ତ୍ତ ବାହାର କରି ସେଥିରେ ଏତକ ମିଶାଇବ ।"

ଠକ ଏହା ଶୁଣିଦେଲା ଓ ବୁଝିଲା, ଗର୍ତ୍ତର ବିଷୟ ଆଲି ଏଯାଏ ଜାଣି ନାହିଁ । ଗର୍ତ୍ତଟି ଯଦି ସେ ରଖିଦିଏ, ତେବେ ଦୁଇଦିନ ପରେ ଛଅଶହ ମୋହର ପାଇବ !

ସେହି ରାତିରେ ଠକ ଗାତ ଖୋଳି ଗର୍ତ୍ତଟି ପୁଣି ପୋତି ଦେବାକୁ ସ୍ଥିର କଲା । କିନ୍ତୁ ପୋତିବ କେମିତି ? ଯଦି ଆଲି ତାକୁ ଦେଖି ପକାଏ ?

ସେ ଗୋଟାଏ ଉପାୟ ପାଞ୍ଚି ଆଲିକୁ କହିଲା, "ଭାଇ, ଅନେକ ଦିନରୁ ତମକୁ ଗୋଟାଏ କଥା କହିବି କହିବି ବୋଲି ଭାବୁଛି । କହିବି ?"

"କ'ଣ ? ମୋ ପାଖରେ ପୁଣି ଏତେ ସଙ୍କୋଚ କରିବାର ଆବଶ୍ୟକତା କ'ଣ ?" ଆଲି ଉତ୍ତର ଦେଲା ।

"ଭାଇ, ଆଉ ସିନା ତମର କିଛି ନାହିଁ, କିନ୍ତୁ ତମେ ଯେତେହେଲେ ଏ ଅଞ୍ଚଳର ସବୁଠାରୁ ବଡ଼ ଅଭିଯାତ ଘରର ପିଲା । ସେଥିପାଇଁ ଏତେ ସଙ୍କୋଚ । କଥା କ'ଣ କି, ତମକୁ ଥରେ ଗୋଟାଏ ବଡ଼ ଭୋଜନାଳୟକୁ ନେଇ ଯାଇ ଭଲ କରି ଖୁଆଇବା ହେଲା ମୋର ଇଚ୍ଛା । ଆଜି ରାତିରେ ତମର ସମୟ ହେବ ?" ଠକ ପଚାରିଲା ।



"ବେକାରର ପୁଣି ସମୟ ଅଭାବ! ଯେତେବେଳେ ଡାକିବ, ଯିବି।" କହିଲା ଆଲି।

ରାତିରେ ଆଲି ଠକ ସହ ଭୋଜନାଳୟକୁ ଗଲା। ସେଠାରେ ଆଲି ସହ ପରାମର୍ଶ କରି ଠକ ନାନା ପ୍ରକାର ମୂଲ୍ୟବାନ ଖାଦ୍ୟ ଦ୍ରବ୍ୟ ବରାଦ କଲା। ସବୁଠାରୁ ଭଲ ପଲଉ ଓ କେତେ ପ୍ରକାରର ତରକାରି।

ଖାଦ୍ୟ ପ୍ରସ୍ତୁତ ହେଉଛି, ହଠାତ୍ ଠକ କହିଲା, "ଭାଇ, ଭୁଲ୍‌ରେ ଟଙ୍କା ଛାଡ଼ି ଆସିଛି। ତମେ ଏଇଠି ଥାଅ, ମୁଁ ଅଧଘଣ୍ଟାକ ଭିତରେ ଆସୁଛି।"

"ଅଧଘଣ୍ଟାଏ କାହିଁକି, ଘଣ୍ଟାଏ ସମୟ ନିଅ। ତମେ ଯେତେ ଖାଦ୍ୟ ବରାଦ କରିଛ, ଦେଢ଼ଘଣ୍ଟା ଆଗରୁ ସେସବୁ ପ୍ରସ୍ତୁତ ହେବାର ଆଶା ନାହିଁ।" ଆଲି କହିଲା।

ଠକ ତରବରରେ ଯାଇ ଯଥା ସ୍ଥାନରେ ଟଙ୍କା ଗଣ୍ଠି ପୋତି ଦେଇ ଫେରି ଆସିଲା। ଦୁହେଁ ଖିଆପିଆ କଲେ। ଠକ ଭୋଜନାଳୟକୁ ଟଙ୍କା ଦେଇଦେଲା। ଯିଏ ଯା' ଘରକୁ ଫେରିଲେ।

ସେହି ରାତିରେହିଁ ଆଲି ନିଜ ଟଙ୍କା ଗଣ୍ଠି ବାହାର କରିନେଇ ଅନ୍ୟତ୍ର ପୋତିଲା।

ପରଦିନ ରାତିରେ ସେ ଗଭୀର ନିଦରେ ଶୋଇବାର ଅଭିନୟ କରିଥାଏ। ଠକ ଆସି ଟଙ୍କା ଗଣ୍ଠି ବାହାର କରିବାରେ ଲାଗି ପଡ଼ିଲା। କିନ୍ତୁ ଯେତେ ଖୋଳିଲେ ବାହାରିଲା ଖାଲି ଆବର୍ଜନା। କାହିଁ ଗଣ୍ଠି?

ପଛରୁ ଅଟ୍ଟହାସ୍ୟ ଶୁଭିଲା। ଠକ ଚମକି ପଡ଼ି ବୁଲି ଅନାଇଲା। ଦେଖିବା ବେଳକୁ ଆଲି ଠିଆ ହୋଇଛି। "ଆରେ ଭାଇ, ଗତ ରାତିର ଖାନା ପାଇଁ ତମକୁ ବିଶେଷ ଧନ୍ୟବାଦ ଦେବାକୁ ତମ ଘରକୁ ଯାଉଥିଲି। ତମେ ଏତେ ରାତିରେ ଏଠି କରୁଛ କ'ଣ?"

ଠକ ଅପମାନରେ ମୃତ ପ୍ରାୟ ହୋଇ ଦୌଡ଼ି ପଳାଇଗଲା।





# ମନୁଷ୍ୟ ଚରିତ୍ର

ଜୋନ୍‌ପୁର ଗ୍ରାମର ସୀମାନ୍ତରେ ଥାଏ ଗୋଟିଏ ଦେବୀ ମନ୍ଦିର । ସେଇ ଦେବୀଙ୍କ ନାମରେ ଅନେକ ଜମିଜମା ଥାଏ ଓ ଅନେକ ମୂଲ୍ୟବାନ୍ ରତ୍ନାଳଙ୍କାର ମଧ୍ୟ ଦେବୀପ୍ରତିମା ପିନ୍ଧିଥା'ନ୍ତି । ତା'ଛଡ଼ା ସର୍ବଦା ଭକ୍ତମାନଙ୍କର ଭିଡ଼ ଲାଗି ରହିଥାଏ ।

ଦିନେ ସନ୍ଧ୍ୟା ପରେ ଭକ୍ତମାନେ ପୂଜା ସାରି ଲେଉଟି ଗଲେଣି ; ମନ୍ଦିର ଶୁନ୍‌ଶାନ୍ । ଦେବୀ ନିଜେ ମନ୍ଦିରରୁ ବାହାରି ଆସି ମନ୍ଦିର ପ୍ରାଙ୍ଗଣର କୋଣରେ ଥିବା ଲିମ୍ବଗଛ ପାଖରେ ଆସି ବସିଲେ । ସେହି ଗଛଠାରୁ ଅଳ୍ପ ଦୂରରେ ଏକ ଭଗ୍ନଦୁର୍ଗ ମଧ୍ୟରେ ଥିବା ତେନ୍ତୁଳିଗଛ ମଧ୍ୟରେ ବାସ କରୁଥାଏ ଏକ ପିଶାଚ । ସେ କିନ୍ତୁ ଗ୍ରାମ ଲୋକଙ୍କର କେବେ କୌଣସି କ୍ଷତି କରିନାହିଁ । ତେଣୁ ଦେବୀଙ୍କର ତା' ପ୍ରତି କୃପା ଥାଏ ଓ ମଝିରେ ମଝିରେ ସେ ତା' ସହିତ କଥାବାର୍ତ୍ତା କରନ୍ତି । ଦିନେ କଥା କହୁ କହୁ ଦେବୀ କହିଲେ କିପରି ଗ୍ରାମ-ବାସୀମାନେ ଓ ଅନ୍ୟଲୋକେ ମଧ୍ୟ ତାଙ୍କୁ ଭକ୍ତି କରନ୍ତି ଓ ପୂଜା ଉପହାର ବହୁତ ଦିଅନ୍ତି ।

ସବୁକଥା ଶୁଣି ପିଶାଚ ଦେବୀଙ୍କୁ କହିଲା, "ମା', ଆପଣ ବହୁତ ସରଳ ଓ ସ୍ନେହପ୍ରବଣ । ମଣିଷ ମାନେ ଅତ୍ୟନ୍ତ ଧୂର୍ତ୍ତ ଓ ସ୍ୱାର୍ଥପର । ନିଜ ସ୍ୱାର୍ଥସିଦ୍ଧି ପାଇଁହିଁ ସେମାନେ ଆପଣଙ୍କର ପୂଜା କରନ୍ତି ଓ ଏତେ ଉପହାର ଦିଅନ୍ତି । ଏ ଗାଁରେ ଏପରି ତଥାକଥିତ ଭଦ୍ରଲୋକ ଅଛନ୍ତି ଯେଉଁମାନେ ଆପଣଙ୍କ ସମ୍ପତ୍ତିରେ ହାତ ଦେବାକୁ ଭଲେ ମଧ୍ୟ କୁଣ୍ଠାବୋଧ କରିବେ ନାହିଁ । କେତେଜଣ ଆପଣଙ୍କ ସମ୍ପତ୍ତି ଉପରେ ନିର୍ଭର କରି ଚଳୁଛନ୍ତି ମଧ୍ୟ ।"

ଗ୍ରାମଦେବୀଙ୍କୁ ଏକଥା ଟିକିଏ ଅଡୁଆ ଲାଗିଲା । ସେ ଟିକିଏ ରାଗ କରି କହିଲେ,



"ତୁହିଁ ମଣିଷମାନଙ୍କୁ ଇର୍ଷ୍ୟା କରୁଛୁ। ମୁଁ ପ୍ରମାଣ କରି ଦେଖାଇ ଦେବି ଯେ ମୋ ଭକ୍ତମାନେ ମୋର ଆଦେଶ କେବେ ମଧ୍ୟ ଅମାନ୍ୟ କରନ୍ତି ନାହିଁ।

ସେଇ ସମୟରେ ଗ୍ରାମର ଓଝା ସେଠାରେ ଆସି ପହଞ୍ଚିଲା ଓ ମନ୍ଦିର ପରିକ୍ରମା କଲା। ତାକୁ ଦେଖି ଦେବୀ କହିଲେ, "ବିଚରା ଏ ବ୍ୟକ୍ତିଟି ବଡ଼ ଗରିବ। ସେ କେତେଦିନ ହେଲା ମୋର ପୂଜା କରୁଛି। ଆଜି ରାତିରେ ମୁଁ ତାକୁ ବରଦାନ ଦେବି।"

"ଠିକ୍ ଅଛି। କିନ୍ତୁ ତା'ର ଆପଣଙ୍କ ପ୍ରତି କେତେ ଭକ୍ତି ଓ ଶ୍ରଦ୍ଧା ଅଛି ସେ କଥା ବୁଝିବା ପାଇଁ ମୋତେ ଅନୁମତି ଦିଅନ୍ତୁ। ଭଲ ଲୋକ ହୋଇଥିଲେ ମୁଁ ମଧ୍ୟ ତାକୁ ସାହାଯ୍ୟ କରିବି।" ପିଶାଚ କହିଲା।

ସେଦିନ ରାତିରେ ଦେବୀ ଓଝାକୁ ସ୍ୱପ୍ନରେ କହିଲେ, "ତୁ ମନ୍ଦିରର ଭଣ୍ଡାର ଘର ଦାୟିତ୍ୱରେ ଥିବା ମୋହନ ସହିତ ସକାଳେ ଦେଖାକର। ସେ ତତେ କିଛି ସାହାଯ୍ୟ କରିବ।" ଏଣେ ମୋହନକୁ ମଧ୍ୟ ଦେବୀ ସ୍ୱପ୍ନରେ କହିଲେ, "ଭଣ୍ଡାର ଘରର ହିସାବ-ପତ୍ର ଦାୟିତ୍ୱ ତୁ ଓଝା ହାତରେ କାଲି ଯେପରି ସମର୍ପଣ କରୁ।"

ସକାଳୁ ଉଠି ଓଝା ମୋହନ ଘରକୁ ଗଲା ଓ ସ୍ୱପ୍ନ ସମାଚାର କହିଲା। ଏକଥା ଶୁଣି ମୋହନ କହିଲା, "ଆରେ ଭାଇ, ଦେବୀ ତୁମକୁ ଏକଥା କହିବା ପୂର୍ବରୁ ମୋତେ ଟିକିଏ ସ୍ୱପ୍ନରେ ଜଣାଇଥିଲେ ଭଲ ହୋଇଥା'ନ୍ତା। ମୁଁ ତ ତୁମ ଆଗରୁ ଆଉ ଜଣକୁ କାର୍ଯ୍ୟଟି ଦେଇ ଦେଇଛି।"

ତା'ପରେ ମୋହନ ସେଇଦିନ ସନ୍ଧ୍ୟାରେ ମନ୍ଦିରକୁ ଯାଇ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ କହିଲା, "ମା', କାଲି ସ୍ୱପ୍ନରେ ମୁଁ ଆପଣଙ୍କୁ କହିବାକୁ ଯାଉଥିଲି କି ମୁଁ ହିସାବ କାମ ଅନ୍ୟଜଣକୁ ଦେଇଦେଇଛି। କିନ୍ତୁ କହିବା ପୂର୍ବରୁହିଁ ଆପଣ ଅନ୍ତର୍ଦ୍ଧାନ ହୋଇଗଲେ। ସମସ୍ତେ ଜାଣନ୍ତି ଆପଣଙ୍କ ଭକ୍ତ ସତ୍ୟନିଷ୍ଠ। ମୁଁ କ'ଣ କଥା ଦେଇ ପୁଣି ଫେରାଇ ଆଣିବି?" ଏକଥା କହି ସେ କାନ୍ଦିବାକୁ ଲାଗିଲା।



ଏକଥା ଶୁଣି ଦେବୀ ଟିକିଏ ବିଚଳିତ ହେଲେ । କିନ୍ତୁ ସେ ଜାଣି ନଥିଲେ ଯେ ମୋହନ ଓଝାକୁ ସେ କାମ ଦେବାକୁ ଚାହୁଁନାହିଁ କାରଣ ସେପରି ହେଲେ ସେ ନିଜେ ଟଙ୍କା ମାରିପାରିବ ନାହିଁ ।

ଏସବୁ ନାଟକ ପିଶାଚ ଦେଖୁଥାଏ । ସେଦିନ ରାତିରେ ସେ ସ୍ୱପ୍ନରେ ଓଝାକୁ ଦେଖାଦେଇ କହିଲା, "ତମେ ମୋର ଶତ୍ରୁ । ତଥାପି ମୁଁ ତୁମକୁ ସାହାଯ୍ୟ କରିବି । ମୁଁ ଏ ଗ୍ରାମର ଧନୀଲୋକର ଝିଅ ଦେହରେ ପ୍ରବେଶ କରିବି । କୌଣସି ମନ୍ତ୍ରରେ ମୁଁ ଛାଡ଼ିବି ନାହିଁ କିନ୍ତୁ ତମେ ଆସି ଝାଡ଼ଫୁଙ୍କ କରିବା ମାତ୍ରେ ମୁଁ ତାକୁ ମୋ ପ୍ରଭାବରୁ ମୁକ୍ତ କରିବି । ତଦ୍ୱାରା ତମର ଖୁବ୍ ଖ୍ୟାତି ହେବ ଓ ତମେ ବହୁତ ପଇସା ମଧ୍ୟ ପାଇବ ।"

ଓଝା ଖୁସିରେ ପିଶାଚର କଥା ମାନିନେଲା । ପରଦିନ ଜଣାଗଲା ଗ୍ରାମର ଧନୀବ୍ୟକ୍ତିଙ୍କ ଝିଅକୁ ପିଶାଚ ଧରିଛି । ଦିନେ ଅଧେ ଚୁପ୍‌ଚାପ୍ ରହିବା ପରେ ଓଝା ଯାଇ ତାଙ୍କ ଘରେ ପହଞ୍ଚିଲା ଓ ନିଜର ଦାମ ବଢ଼ାଇବାକୁ ଯାଇ କହିଲା, "ପୂଜା ପାଇଁ ସବୁ ଜିନିଷପତ୍ର ପ୍ରସ୍ତୁତ ରଖ । କାଲିଠାରୁ ମୁଁ ଭୂତ ଛଡ଼ାଇବା ପାଇଁ ପୂଜା କରିବି ।"

ଇତିମଧ୍ୟରେ ସେଇ ରାତିରେ ଦେବୀ ସ୍ୱପ୍ନରେ ଓଝାକୁ କହିଲେ, "ଦେଖ୍ ତୁ ମୋର ଭକ୍ତ, ମୋ କଥା ମାନ, ମୁଁ ଏଥର ତୋ ପାଇଁ କିଛି ଧନର ବ୍ୟବସ୍ଥା କରିବି । ତୁ କାଲି ଯାଇ ବୈଷ୍ଣବ ଗୋବିନ୍ଦଗୁପ୍ତ ସହିତ ଦେଖାକର । କିନ୍ତୁ ମନେରଖ ତୁ ଯଦି ମୋର ପ୍ରକୃତରେ ଭକ୍ତ ତେବେ ତୁ ଧନ ପାଇଁ ଆଉ କାହାର ସାହାଯ୍ୟ ନେବୁ ନାହିଁ ।"

ତା'ପରେ ଦେବୀ ଗୋବିନ୍ଦଗୁପ୍ତଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ, "ତୁ ଓଝାକୁ କିଛି ଧନ ସାହାଯ୍ୟ କରିବୁ ।" ଗୋବିନ୍ଦ ଭକ୍ତି ଭରେ କହିଲା, "ମା', ଆପଣଙ୍କର ଯାହା ଇଚ୍ଛା ମୋର ତାହା ଶିରୋଧାର୍ଯ୍ୟ ।"

ପରଦିନ ଓଝାକୁ ଦେଖିବା ମାତ୍ରେ ଗୋବିନ୍ଦ ଚିତ୍କାର କରି କହିଲା, "ମୁଁ କେତେ କଷ୍ଟକରି ପଇସା ରଖି ରଖି ଏତେ ଧନ ଜମାଇଛି ।

ଦାନଧର୍ମ କରିବା ମୋ ପରିବାରର ଜାତକରେ ନାହିଁ । ଦେବୀଙ୍କର ଆଦେଶ ଓ ତୁ ସେଥିପାଇଁ ମୋତେ ଆସି ମାଗୁଛୁ ଏସବୁ ମୋତେ ନାଟକ ପରି ଲାଗୁଛି । ମୁଁ ତତେ ଫଟା ପାହୁଲାଟାଏ ସୁଦ୍ଧା ଦେବାକୁ ଚାହୁଁନାହିଁ ।"

ଏକଥା ଶୁଣି ଓଝା ମଧ୍ୟ ରାଗିଯାଇ ସେଠାରୁ ଚାଲିଗଲା । ତା'ପରେ ଗୋବିନ୍ଦଗୁପ୍ତ ସ୍ନାନ କରି, ମୁଣ୍ଡରେ ତିଳକ କାଟି ଯାଇ ମନ୍ଦିରରେ ପହଞ୍ଚିଲା । ସେଠାରେ ଦେବୀଙ୍କ ପାଦ ପାଖରେ ବସି କାନ୍ଦି କାନ୍ଦି ଜଣାଇଲା, "ମା', ମୁଁ ଆଉ କହିବି କ'ଣ ? ମୋ ଜୀବନରେ ମୁଁ ବହୁତ କଷ୍ଟ ପାଇଛି । ମୁଁ ବୋକାମୀ କରି ମୋ ସ୍ତ୍ରୀ ନାମରେ ସବୁ ସମ୍ପତ୍ତି ଲେଖି ଦେଇଛି । ମୁଁ ତାକୁ ଆପଣଙ୍କ ଆଦେଶ କହିବା ମାତ୍ରେ ସେ କହିଲା ଏପରି ହେଲେ ସେ ମୋତେ ଘରୁ ନିକାଳି ଦେବ । ମୋତେ ମା କ୍ଷମା କରନ୍ତୁ ।" ତା'ପରେ ସେଠାରୁ ଉଠି ସେ ଘରକୁ ଚାଲିଗଲା ।

ଦେବୀ ତା' ଉପରେ ଦୟାର୍ଦ୍ର ହୋଇ ଭାବିବାକୁ ଲାଗିଲେ, "ବିଚରା, ସିଏ ଆଉ କ'ଣ କରିବ ? ମୋ ପ୍ରତି ଶ୍ରଦ୍ଧା, ଭକ୍ତି ଥିଲେ ମଧ୍ୟ ପତ୍ନୀର ସହଯୋଗ ନ ଥିବାରୁ ବିଚରା କେତେ ଦୁଃଖ କରୁଛି ।"

ପରଦିନ ଓଝା ଧନୀଘରେ ପହଞ୍ଚି ତା' ଝିଅ ଦେହରୁ ପିଶାଚକୁ କାଢ଼ିଦେଲା । ତେଣୁ ଧନୀବ୍ୟକ୍ତି ପୁରସ୍କାର ସ୍ୱରୂପ ଓଝାକୁ ବହୁତ ଧନ ଦେଲା । ଏଇ ଘଟଣା ପରେ ତା'ର ନାମ ମଧ୍ୟ ସମସ୍ତେ ଜାଣିଗଲେ ।



ତା'ପର ସପ୍ତାହରେ ପିଶାଚ ପାଖ ଗ୍ରାମର ମୁଖିଆଙ୍କ ଝିଅ ଦେହରେ ପ୍ରବେଶ କଲା ଓ ଓଝା ତାକୁ ଭଲ କଲା । ପିଶାଚ ପ୍ରତି ଓଝାର ବିଶ୍ୱାସ ବଢ଼ିଗଲା । ଦିନେ ରାତିରେ ଦେବୀ ଆସି ଓଝାକୁ ଦେଖା ଦେଲେ । ଓଝା ହାତ ଯୋଡ଼ି କହିଲା, "ମା', ଆପଣ ମୋ ପାଇଁ ଯେଉଁ ଚେଷ୍ଟା କଲେ ସେଥିପାଇଁ ଧନ୍ୟବାଦ । କିନ୍ତୁ ପିଶାଚର ସହାୟତାରେ ମୁଁ କୌଣସି ମତେ ଚଳୁଛି । ତେଣୁ ମୋତେ ଛାଡ଼ି ଦିଅନ୍ତୁ ।"

ଏକଥା ଦେବୀଙ୍କୁ ଟିକିଏ ଅପମାନଜନକ ଲାଗିଲା । ସେ ଶାନ୍ତ ସ୍ୱରରେ କହିଲେ, "ଶୁଣ ଏଥରକ ମୁଁ ଶେଷ ଚେଷ୍ଟା କରିବି । ତୁ ଯାଇ ଭକ୍ତ ଶିବରାମକୁ ଦେଖା କର । ତୁ ମୋତେ କଥା ଦେ ଯେ ଭବିଷ୍ୟତରେ କେବେ ପିଶାଚର ସାହାଯ୍ୟ ନେବୁ ନାହିଁ । ତେବେ ଯାଇ ମୁଁ ତୋର ସହାୟତା କରିବି ।"

ଓଝା ଆଉ କ'ଣ କରିବ । ଅନିଚ୍ଛା ସତ୍ତ୍ୱେ ମଧ୍ୟ ଦେବୀଙ୍କ କଥାରେ ସମ୍ମତି ଦେଲା । ତା ପରଦିନ ଯାଇ ଶିବରାମ ଘରେ ପହଞ୍ଚିଲା । ସେତେବେଳେ ଶିବରାମ ବଡ଼ ମନଯୋଗ ସହକାରେ "ରାମ" 'ରାମ' ଲେଖୁଥାଏ ଓ ଜପୁଥାଏ । ଓଝା ସେଠାରେ କିଛି ସମୟ ଅପେକ୍ଷା କଲା ପରେ ସେ ଖାତାରୁ ମୁହଁ ଉପରକୁ ଉଠାଇ କହିଲା, "ଦେବୀ ରାତିରେ ବୋଧେ ତୁମର କଥାହିଁ କହୁଥିଲେ । ଅସଲ କଥା ହେଉଛି ମୁଁ ଯେତେଦିନ ଦେବୀଙ୍କର ଭକ୍ତ ହୋଇଥିଲି ମୋର କିଛି ଲାଭ ହୋଇ ନାହିଁ । ଏବେ 'ରାମ' 'ରାମ' ଲେଖିବାରୁ





ମୋତେ ଶାନ୍ତି ମିଳୁଛି । ଏଇ ଜପ ଶେଷ ହେବା ପରେ ମୋତେ ଅନେକ ସମ୍ପତ୍ତି ମଧ୍ୟ ମିଳିବ । ସେତେବେଳେ ମୋର ଯାହାକୁ ଇଚ୍ଛା ତାକୁ ସେ ସମ୍ପତ୍ତି ଦେଇଦେବି ।"

ଏକଥା ଶୁଣି ଓଝା ସେଠାରୁ ସିଧା ଜମିଦାର ଘର ଆଡ଼େ ଚାଲିଲା । ବାଟରେ ଜମିଦାରଙ୍କ ଚାକର ଓଝାକୁ ଦେଖି କହିଲା, "ମୁଁ ଆପଣଙ୍କୁହିଁ ଖୋଜୁଛି । ଜମିଦାରଙ୍କ ଝିଅକୁ ପୁଣି ପିଶାଚ ଲାଗିଛି ଆପଣ ଆସି କିଛି ପ୍ରତିକାର କରନ୍ତୁ । ଶୀଘ୍ର ମୋ ସହିତ ଆସନ୍ତୁ ।" ଓଝା ସିଧା ସେଠାକୁ ଗଲା । ଜମିଦାର ନିଜେ ତାକୁ ରୋଗୀଣି ପାଖକୁ ନେଇଗଲେ । ଓଝା ଘର ଭିତରକୁ ଯାଇ କବାଟ ବନ୍ଦ କରିଦେଲା । ଜମିଦାର ଝିଅ ଅଟ୍ଟହାସ କରି ତାଳି ମାରି କହିଲା, "ମତେ ଏଠାରେ ବହୁତ ଭଲ ଲାଗୁଛି । ଭଲ ଭୋଜନ, ଶୋଇବାକୁ ନରମ ଗଦି । ମୁଁ ଏବେ ଏଇଠି ରହିବି । ତମେ ଚାଲିଯାଅ ।"

ପିଶାଚର କଥା ଶୁଣି ଓଝା ମୁଣ୍ଡରେ ବଜ୍ରପାତ ହେଲା । ଯଦି ସତରେ ପିଶାଚ ନ ଯାଏ ତେବେ ଓଝାର ବଦନାମ ହେବ ଓ ଜମିଦାର ତାକୁ ବହୁତ ଦଣ୍ଡ ମଧ୍ୟ ଦେବେ । ତେଣୁ ସେ କିଛି କାହାକୁ ନ କହି ନିଜ ଘରକୁ ଚାଲିଗଲା ।

ସେଦିନ ରାତିରେ ତା'ର ନିଦ ହେଲା ନାହିଁ । ଶେଷ ରାତିରେ ଟିକିଏ ଆଖି ବୁଜିଛି କି ନାହିଁ ସ୍ୱପ୍ନରେ ଦେଖିଲା ଗ୍ରାମଦେବୀ ଆସି କହୁଛନ୍ତି, "ପିଶାଚ ତତେ ଯେତେ ସାହାଯ୍ୟ କଲେ ମଧ୍ୟ ପିଶାଚ ପିଶାଚହିଁ । ଏକଥା ତୁ ଭୁଲିଯାଇ ବିପଦରେ ପଡ଼ିଛୁ । କିନ୍ତୁ ଦୁଃଖ କରନା । ମୁଁ ଯାହା କହୁଛି କର ।" ତା'ପରେ ଦେବୀ ଓଝାକୁ କିଛି ଉପାୟ କହିଦେଇ ଅଦୃଶ୍ୟ ହୋଇଗଲେ ।

ପରଦିନ ଓଝା ହାତରେ କାଚର ଗଡୁଟିଏ ଧରି ଜମିଦାର ଘରେ ପହଞ୍ଚିଲା । କାଚଗଡୁ ଦେଖିବା ମାତ୍ରେହିଁ ପିଶାଚ ପଚାରିଲା, "ଆହା, ଏଇଟି କେଡ଼େ ସୁନ୍ଦର ହୋଇଛି । ମନେ ହେଉଛି ତା' ଭିତରେ ରେଶମର ଦୋଳିଟିଏ ଅଛି ।"

ଓଝା କହିଲା, "କାଲି ରାତିରେ ମୋ ଗୁରୁ ବନ୍ଧ୍ୟାଚଳରୁ ଫେରିଛନ୍ତି । ସେ ମୋ ଭକ୍ତି ଓ ଅତିଥିସତ୍କାରରେ ଖୁସି ହୋଇ ମୋତେ ଏଇଟି ଦେଇଛନ୍ତି । କାଚଗଡୁ ଭିତରେ ଥିବା ଦୋଳରେ ଯିଏ ବସି କିଛି ଇଚ୍ଛା କରିବ ତତ୍କ୍ଷଣାତ୍ ତାହା ପାଇ ପାରିବ । କିନ୍ତୁ ସାଧାରଣ ମନୁଷ୍ୟ ପାଇଁ ଏହାର କିଛି ମୂଲ୍ୟ ନାହିଁ । ଏ ଛୋଟ ଗଡୁ ଭିତରେ କିଏ ବା ପ୍ରବେଶ କରିପାରିବ ।

ଏକଥା ଶୁଣି ପିଶାଚ ଖୁସି ହୋଇ ଓଝାକୁ କହିଲା, "ମୋର କେତେଦିନର ଇଚ୍ଛା ଆଜି ଫଳବତୀ ହେବ । ମୋର ଇଚ୍ଛା କେତେଠାରୁ ଥିଲା ମୋର ସୌନ୍ଦର୍ଯ୍ୟ ଶତଗୁଣରେ ବଢ଼ିଯା'ନ୍ତା କି ? ଏବେ ମୁଁ ଯାଇ ଭିତରେ ପଶି ସେ ରେଶମ ଝୁଲରେ ଟିକିଏ ଝୁଲେ ।"

ସେ ପଶିବା ମାତ୍ରେ ଓଝା କାଚଗଡୁରେ ଢ଼ାଙ୍କୁଣୀ ଲଗାଇ ଦେଲା । ସେଥିରେ ପିଶାଚ ରାଗିଯାଇ ଭିତରୁ ଅନେକ ଚିତ୍କାର କରି କହିଲା, "ଏପରି ବିଶ୍ୱାସଘାତକତା କାହିଁକି କଲୁ । ଏଇଟା ଘୋର ଅନ୍ୟାୟ ।" ଓଝା କହିଲା, "ତୁ ଯେତେବେଳେ ଜମିଦାର ଝିଅ ଦେହରୁ ବାହାରିବାକୁ ମନା କରୁଥିଲୁ ସେଇଟା କ'ଣ ବଡ଼ ନ୍ୟାୟଟା କରୁଥିଲୁ କି ? ଯାହା ହେଉ ଦେବୀଙ୍କ କୃପାରୁ ସବୁ ହୋଇଛି ।"

ଓଝାର କାର୍ଯ୍ୟରେ ଖୁସି ହୋଇ ଜମିଦାର ତାକୁ ଅନେକ ଜମି ଓ ଟଙ୍କା ପୁରସ୍କାର ଦେଲେ ।

ଗ୍ରାମଦେବୀ ମଧ୍ୟ ଉପଲବ୍ଧି କଲେ ମନୁଷ୍ୟକୁ ସେ ଯେତେ ସରଳ ଭାବୁଥିଲେ ସେ ସେତେ ନୁହେଁ । ପ୍ରକୃତରେ ମଣିଷ ମଧ୍ୟରେ ଭଲ ମନ୍ଦ ଦୁଇଟା ରହିଛି । ସେ ସମସ୍ତ ସୁଯୋଗ ଦେଖି ଦୁଇଟାକୁ କାମରେ ଲଗାଏ । ଏଣିକି ଦେବୀ ଆଉ ସହଜରେ ଦର୍ଶନ ଦେବା ବା ସ୍ୱପ୍ନରେ କଥାବାର୍ତ୍ତା କରିବା ବନ୍ଦ କରିଦେଇ ବେଶି ସମୟ ମୌନ ରହିଲେ ।



# ଆଦର୍ଶ ବ୍ୟବସାୟ

କାଳୀପଦ ଓ ତପନ ଦୁହେଁ ଗୋଟିଏ ଗ୍ରାମରେ ବାସ କରନ୍ତି । ଥରେ କାଳୀପଦର ଟଙ୍କା ଦରକାର ହେଲା । ସେ ତା'ର ଘୋଡ଼ାଗାଡ଼ି ଶହେଟଙ୍କାରେ ତପନକୁ ବିକିଦେଲା । ତା'ପରେ ତା' ମନରେ ସନ୍ଦେହ ହେଲା ଯେ ହୁଏତ ସେ ତରତରରେ କମ୍ ଟଙ୍କାରେ ଗାଡ଼ିଟି ବିକି ଦେଇଛି । ଏ ବିଚାର ମନରେ ଆସିବା ମାତ୍ରେ ସେ ତପନ ସହିତ କଥାବାର୍ତ୍ତା କରି ଦୁଇଶହ ଟଙ୍କାରେ ଗାଡ଼ିଟି କିଣିନେଲା ।

ତା'ପରେ ଥରେ ତପନର ଘୋଡ଼ାଗାଡ଼ିଟି ଦରକାର ହେଲା । ସେ ବିନା ଦ୍ୱିଧାରେ ତିନିଶହରେ ସେଇଟି ପୁଣି କାଳୀପଦଠାରୁ କିଣି ନେଲା । ଏହିପରି ଭାବରେ ଦୁଇଜଣଙ୍କ ମଧ୍ୟରେ ଘୋଡ଼ାଗାଡ଼ିଟି କିଣାବିକା ହେଉ ହେଉ ତା'ର ମୂଲ୍ୟ ଯାଇ ଆଠଶହ ଟଙ୍କାରେ ପହଞ୍ଚିଲା । ତା'ପରେ ଗ୍ରାମର ଜଣେ ଧନୀ ଗାଡ଼ିଟି କାଳୀପଦଠାରୁ ହଜାରେ ଟଙ୍କାରେ କିଣି ନେଲା । ଏକଥା ଶୁଣୁ ଶୁଣୁ ତପନ କାଳୀପଦ ଘରେ ପହଞ୍ଚି ତାକୁ ରାଗିକରି କହିଲା, "କାଳୀପଦ, ତୁମପରି ମୂର୍ଖ ଆଉ ଜଗତରେ ନାହିଁ । ବ୍ୟବସାୟର ମୂଳ ରହସ୍ୟ ବୋଧେ ତୁମକୁ ମାଲୁମ ନାହିଁ । ଆମ ଦୁଇଜଣଙ୍କୁ ବରାବର ଲାଭ ଆଣି ଦେଉଥିବା ଗାଡ଼ିକୁ ତୁମେ ଅନ୍ୟ ଜଣେ ଲୋକକୁ ବିକି ଦେଲ ?"





# ବିଷ୍ଣୁ ପୁରାଣ

ମୁନିମାନେ ସୂତ ମହର୍ଷିଙ୍କୁ ପଚାରିଲେ, "ମୁନିବର, ଆମେମାନେ ଶୁଣିଛୁ ବିଷ୍ଣୁଙ୍କର ଅନ୍ୟ ଏକ ରୂପ କୃଷ୍ଣଙ୍କ ଆକୃତି ପରି ଓ ସେ ଗୋଲୋକରେ ବାସ କରନ୍ତି । ଆମେ ତାଙ୍କ ବିଷୟରେ କିଛି ଶୁଣିବାକୁ ଚାହୁଁଛୁ ।"

ସୂତ ମୁନି କହିଲେ, "ସତ୍ୟ ଲୋକର ଊର୍ଦ୍ଧ୍ୱରେ ଅଛି ଗୋଲୋକ । ଏହା ସଦାସର୍ବଦା ଅନେକ ନକ୍ଷତ୍ରସମୂହ ଦ୍ୱାରା ଜ୍ୟୋତ୍ସ୍ନାଲୋକରେ ପୂର୍ଣ୍ଣ ଥାଏ । ସେଠାରେ ବିଷ୍ଣୁଙ୍କ ଶରୀରର ରଙ୍ଗ ଘନ ନୀଳ । ସର୍ବଦା ନିକଟରେ ପ୍ରବାହିତ ବିରଜା ନଦୀ ତଟସ୍ଥ ତୁଳସୀବନରେ ବଂଶୀ-ବାଦନ ରତ, ତାଙ୍କ ନାମ ମଧ୍ୟ ଶ୍ରୀକୃଷ୍ଣ । ସେଇ ଦିବ୍ୟ ମୁରଲୀର ଦିବ୍ୟ ଧ୍ୱନିରୁ ଥରେ ପ୍ରକଟ ହେଲେ ଐଶ୍ୱର୍ଯ୍ୟମୟୀ ରାଧା । ରାଧା ଓ କୃଷ୍ଣ ପ୍ରକୃତି ଓ ପୁରୁଷ । ଏକହିଁ ଦିବ୍ୟସତ୍ତା ଦ୍ୱିଧା ବିଭକ୍ତ । ସେଇ ଗୋଲୋକରେ ଦୁହେଁ ବିହାର କରୁଥା'ନ୍ତି । ଶ୍ରୀକୃଷ୍ଣଙ୍କ ଦିବ୍ୟସତ୍ତାରୁ ଉତ୍ପନ୍ନ ସୁଦାମ ସେମାନଙ୍କର ସର୍ବଦା ସେବାରତ । ଦେବୀ ରାଧାଙ୍କ ଶରୀରରୁ ଉତ୍ପନ୍ନ ହେଲେ ଅସଂଖ୍ୟ ଗୋପୀ । ଆଉ ବିରଜା ଦେବୀ ସ୍ୱୟଂ ନାରୀରୂପ ଧାରଣ କରି ବୃନ୍ଦାଦେବୀ ନାମ ନେଇ ଦୁହିଁଙ୍କର ସେବା କରୁଥା'ନ୍ତି । ଥରେ ରାଧା ଓ କୃଷ୍ଣ ପରସ୍ପର ଅନୁରାଗବଶତଃ ଦିବ୍ୟଆନନ୍ଦରେ ମଗ୍ନ ଥା'ନ୍ତି । ଠିକ୍ ସେତିକି-ବେଳେ ବିରଜା କୃଷ୍ଣଙ୍କୁ ଖୋଜି ଖୋଜି ସେଇଠି ପହଞ୍ଚିଲେ ଓ ରାଧାଙ୍କର ଆନନ୍ଦ ଧ୍ୟାନ ଭଙ୍ଗ ହେଲା । ରାଧା ବିଚଳିତା ହୋଇ ଶାପ ଦେଲେ ଯେ ସେ ଯେପରି ପୃଥିବୀରେ ଜନ୍ମ



ହୁଅନ୍ତି । ସୁଦାମଙ୍କୁ କିନ୍ତୁ ଏଇଟା ଠିକଏ ଅନ୍ୟାୟ ମନେ ହେଲା । ସେ କହିଲେ ଏପରି ଶାପ ଦେବା ଉଚିତ ହୋଇନାହିଁ ।

ରାଧାଙ୍କର ରାଗ ହୁଏତ ଆହୁରି ବଢ଼ିଗଲା । ସେ ସୁଦାମକୁ ମଧ୍ୟ ଅଭିଶାପ ଦେଲେ, "ତୁ ମଧ୍ୟ ରାକ୍ଷସ ହୋଇ ପୃଥିବୀରେ ଜନ୍ମ ହେବୁ ।" ରାଧାଙ୍କ ଅଭିଶାପ ଯୋଗୁ ବିରଜା ତୁଳସୀ ନାମକ ଏକ ରାଜକୁମାରୀ ହୋଇ ପୃଥିବୀ ଉପରେ ଥା'ନ୍ତି, ତାଙ୍କର ଅନ୍ୟ ନାମ ଥିଲା ବୃନ୍ଦା ।

ଥରେ ଇନ୍ଦ୍ର କୈଳାସକୁ ଯାଇଥିଲେ । ତାଙ୍କର କୌଣସି ଭୁଲ୍ କାର୍ଯ୍ୟ ଯୋଗୁ ଶିବଙ୍କର ତୃତୀୟ ନୟନରୁ ଅଗ୍ନି ସ୍ଫୁଲିଙ୍ଗ ସବୁ ବାହାରିଥିଲା । ଶିବ ପରେ ଶାନ୍ତ ହେଲେ କିନ୍ତୁ ସେଇ ଅଗ୍ନି ସ୍ଫୁଲିଙ୍ଗକୁ ନେଇ ସମୁଦ୍ରରେ ରଖିଲେ । ଏଣେ ରାଧାଙ୍କ ଅଭିଶାପବଶରୁ ସୁଦାମ ଗୋଲକରୁ ସେଇ ଅଗ୍ନି କ୍ଷେତ୍ର ମଧ୍ୟରେ ପତିତ ହେଲେ ଓ ମଥାରେ ଏକ ଶ୍ୱେତଶଙ୍ଖ ଧାରଣ କରି ପାଣିକୂଳରେ ଏକ ବାଳକ ରୂପରେ ରହୁଥା'ନ୍ତି । ସୁଦାମ କୃଷ୍ଣଙ୍କର ଜଣେ ପ୍ରିୟ-ପାତ୍ର ଥା'ନ୍ତି । ତେଣୁ କୃଷ୍ଣ ସେଇ ନବଜାତ ବାଳକକୁ ଅଜେୟ କୃଷ୍ଣକବଚ ଧାରଣ କରିବାକୁ ଦେଲେ ।

ସେଇ ସମୟରେ ଦମ୍ଭ ନାମକ ରାକ୍ଷସ ରଜା ସମୁଦ୍ରତଟରେ ପୁତ୍ରପ୍ରାପ୍ତି ପାଇଁ ଘୋର ତପସ୍ୟା କରୁଥାଏ । ସେ ସମୁଦ୍ରଜଳରୁ ଏଇ ବାଳକଟିକୁ ନେଇ ନିଜର ପୁତ୍ର ରୂପେ ପାଳନ କଲା । ସେହି ବାଳକର ନାମ ହେଲା ଜଳନ୍ଧର । ତା'ର ଅନ୍ୟ ନାମ ହେଲା ଶଙ୍ଖଚୂଡ଼ ।

ଏଣେ ରାଜକୁମାରୀ ତୁଳସୀ ବିଷ୍ଣୁଙ୍କୁ ନିଜ ପତି ରୂପରେ ପୂଜା କରୁଥାଏ । ଦିନେ ଜଳନ୍ଧର ତାକୁ ଦେଖିଲା । ତା'ପରେ ସେ ତୁଳସୀର ପିତା ରାଜା ଧର୍ମଧ୍ୱଜଙ୍କୁ ଦେଖାକରି ତୁଳସୀକୁ ବିବାହ କରିବାର ପ୍ରସ୍ତାବ ଦେଲା । ରାଜା ତାହାର ପ୍ରସ୍ତାବ ଗ୍ରହଣ କଲେ ଓ ବିବାହ ସମ୍ପନ୍ନ ହେଲା । ତୁଳସୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜଳନ୍ଧର ବିବାହ କଲେ ମଧ୍ୟ ତୁଳସୀର ସାତ୍ତ୍ୱିକ ସ୍ୱଭାବ ଓ ଜଳନ୍ଧରର ତାମସିକ ସ୍ୱଭାବ ମଧ୍ୟରେ ବହୁତ ପାର୍ଥକ୍ୟ ଥିଲା । ସେ ବିବାହ ପରେ କୌଣସି ମତେ ତୁଳସୀର ସାନ୍ନିଧ୍ୟରେ



ରହି ପାରୁ ନଥାଏ । ତେଣୁ ବିବାହ ପରେ ଯଥେଷ୍ଟ ଦୂରତ୍ୱ ରକ୍ଷା କରିଥାଏ । କିନ୍ତୁ ତୁଳସୀ ନିଜ ସ୍ୱାମୀର ମଙ୍ଗଳ ପାଇଁ ଧର୍ମକାର୍ଯ୍ୟ ସବୁ କରୁଥାଏ । ଜଳନ୍ଧର କୃଷ୍ଣକବଚ ଯୋଗୁ ସବୁ ସ୍ଥାନରେ ଅଜେୟ ହୋଇ ଉଠିଲା ।

ଦିନେ କଳହପ୍ରିୟ ନାରଦ ଯାଇ ଜଳନ୍ଧର ଆଗରେ ଦେବୀ ପାର୍ବତୀଙ୍କର ରୂପର ବର୍ଣ୍ଣନା କଲେ । ସେ ବର୍ଣ୍ଣନା ଶୁଣି ଜଳନ୍ଧର ସିଧା ଶିବଙ୍କ ପାଖକୁ ଯାଇ କହିଲା, "ତୁମର ସ୍ତ୍ରୀଙ୍କୁ ମୋତେ ଚୁପ୍‌ଚୁପ୍ ଦେଇଦିଅ ନହେଲେ ଫଳ ଖରାପ ହେବ ।" ଶିବ ରାଗିଯାଇ ତା' ଉପରେ ତ୍ରିଶୂଳ ପ୍ରହାର କଲେ, କିନ୍ତୁ କୃଷ୍ଣକବଚ ଯୋଗୁ ତାର କୌଣସି କ୍ଷତ ହେଲା ନାହିଁ । ଏକଥା ଦେଖି ପାର୍ବତୀ ଭୟଭୀତ ହୋଇ ବ୍ରହ୍ମାଙ୍କର ଶରଣ ନେଲେ । ବ୍ରହ୍ମା କହିଲେ, "ଶିବଙ୍କ ତୃତୀୟନେତ୍ରରୁ ନିଃସାରିତ ଅଗ୍ନି ଦ୍ୱାରା ସମୁଦ୍ରରେ ହୋଇଥିବା ଅଗ୍ନିକ୍ଷେତ୍ରରେହିଁ ତା'ର ଉତ୍ପତ୍ତି । ଶିବ ତାକୁ ମାରିପାରିବେ କିନ୍ତୁ କୃଷ୍ଣକବଚ ଥିବାପର୍ଯ୍ୟନ୍ତ ସେ ଅଜେୟ ହୋଇଥିବ । ପୁଣି ତା' ସ୍ତ୍ରୀର ତପସ୍ୟାଶକ୍ତି ତାକୁ ରକ୍ଷା କରୁଛି । କିନ୍ତୁ ବିଷ୍ଣୁଙ୍କ ମାୟାକୁ କେହି ଜିତି ପାରିବ ନାହିଁ । ତୁମେ ଯାଇ ବିଷ୍ଣୁଙ୍କର ଶରଣ ନିଅ ।"

ପାର୍ବତୀ ବିଷ୍ଣୁଙ୍କୁ ସ୍ମରଣ କଲେ । ତାଙ୍କର ପ୍ରାର୍ଥନା ଶୁଣି ବିଷ୍ଣୁ ଏକ ବୃଦ୍ଧ ବ୍ରାହ୍ମଣ ରୂପରେ ଯାଇ ପ୍ରଥମେ ଅନେକ ପ୍ରକାରରେ ଜଳନ୍ଧରର ପ୍ରଶଂସା କରି କହିଲେ, "ତମେ ଓ ବୀରଶ୍ରେଷ୍ଠ ତମର କବଚର କ'ଣ ଆବଶ୍ୟକତା ଅଛି ? ମୁଁ ଶୀତ ଗ୍ରୀଷ୍ମରେ କାତର ହେଉଛି । ମୋତେ ଯଦି କବଚଟି ଦିଅନ୍ତ ତେବେ ମୁଁ ଟିକିଏ ଏଇସବୁ ପୀଡ଼ାରୁ ଉଦ୍ଧାର ପାଆନ୍ତା ।"

ଜଳନ୍ଧର ହସି ହସି କହିଲା, "ତମେ ଯାହା କହୁଛ ଠିକ୍ । ମୋ ପାଖରେ କୃଷ୍ଣକବଚର କୌଣସି ଆବଶ୍ୟକତା ନାହିଁ ।" ଏକଥା କହି ସେ ବ୍ରାହ୍ମଣକୁ ତାହା ଦାନ କରିଦେଲା । ତା'ପରେ ବିଷ୍ଣୁ ଜଳନ୍ଧରର ରୂପ ନେଇ ତୁଳସୀ ପାଖକୁ ଗଲେ । ଏଣେ ଶିବ ଓ ଜଳନ୍ଧର ମଧ୍ୟରେ ତୁମୁଳ ସଂଗ୍ରାମ ଚାଲିଥାଏ ।



ବହୁଦିନ ପୂର୍ବେ ଗଣ୍ଡକୀ ନାମକ ଏକ ଦେବନର୍ତ୍ତକୀ ପୃଥ୍ୱୀଲୋକରେ ଜନ୍ମ ନେଇ ବିଷ୍ଣୁଙ୍କୁ ତପସ୍ୟା କରୁଥାଏ । ବିଷ୍ଣୁ ତା' ଆଗରେ ପ୍ରକଟ ହୋଇ ବର ମାଗିବାକୁ କହିଲେ । ଗଣ୍ଡକୀ ଅତି ଖୁସି ହୋଇ କହିଲା, "ଭଗବାନ୍, ଆପଣଙ୍କୁ ମୋ ମଧ୍ୟରେ ଲୁଚାଇ ରଖିବା ପାଇଁ ମୋର ପ୍ରବଳ ଆଗ୍ରହ ।"

ବିଷ୍ଣୁ କହିଲେ, "ତମେ ପୃଥିବୀ ଉପରେ ଗଣ୍ଡକୀ ନଦୀ ହୋଇ ପ୍ରବାହିତ ହୁଅ ମୁଁ ତୁମ ମଧ୍ୟରେ ପବିତ୍ର ଶାଳଗ୍ରାମ ଶିଳା ହୋଇ ରହିବି ।" ତା'ପରେ ଗଣ୍ଡକୀ ନଦୀ ରୂପ ଧାରଣ କଲା ।

ଏଣେ ତୁଳସୀଦେବୀ ଜଳନ୍ଧର ରୂପୀ ବିଷ୍ଣୁଙ୍କୁ ଦେଖି ଖୁବ୍ ଖୁସି ହେଲେ । ବହୁତ ଦିନ ପରେ ସ୍ୱାମୀଙ୍କୁ ପାଇଁ ଖୁସି ହୋଇ ତାଙ୍କୁ ପ୍ରଣାମ କଲେ । ଠିକ୍ ସେତିକିବେଳେ ଶିବଙ୍କ ତ୍ରିଶୂଳ ଜଳନ୍ଧରର ବେକ କାଟି ସେଇଠାରେ ଆଣି ପକାଇ ଦେଲା । ତୁଳସୀ ନିମିଷକ ମଧ୍ୟରେ ସବୁ ବୁଝିଗଲେ । ସେ ଦୁଃଖ ଓ ରାଗରେ ବିଷ୍ଣୁଙ୍କୁ ଅଭିଶାପ ଦେଲେ, "ବିଷ୍ଣୁ, ତମେ ମୋତେ ଠକାଇଛ, ସେଇ ଅପରାଧ ଯୋଗୁ ତମେ ଶିଳାରୂପ ଧାରଣ କର ।"

ବିଷ୍ଣୁ ସେତେବେଳକୁ ନିଜ ରୂପରେ ପ୍ରକଟିତ ହୋଇଥା'ନ୍ତି । ସେ ଅଳ୍ପ ହସି କହିଲେ, "ହେ ସତୀ ତୁଳସୀ, ମୁଁ ତୁମ ଶାପକୁ ପ୍ରସନ୍ନତା ପୂର୍ବକ ଗ୍ରହଣ କରୁଛି । ତୁମେ ବିବାହ ପୂର୍ବରୁ ମୋତେହିଁ ପାଇବାକୁ 'ଚାହିଁଥିଲ । ଜଳନ୍ଧର ରୂପରେ ମୋର ଶରୀରରୁ ଜାତ ସୁଦାମହିଁ ତୁମକୁ ବିବାହ କରିଥିଲା । ତମେ ପତିବ୍ରତ୍ୟଧର୍ମ ପାଳନ କରିବାରେ ଆଦର୍ଶନୀୟା । ତମେ ତୁଳସୀ ଗଛ ରୂପରେ ପୃଥିବୀରେ ରହିବ । ତାହା ହେବ ମୋର ସବୁଠାରୁ ପ୍ରିୟ ଗଛ ଏବଂ ତାହା ହେବ ସବୁଠାରୁ ପବିତ୍ର ଗଛ । ମୁଁ ମଧ୍ୟ ଶାଳଗ୍ରାମ ପଥର ଭାବରେ ପୃଥିବୀ ଉପରେ ଅବସ୍ଥାନ କରିବି ।"

ସେହିଦିନଠାରୁ ତୁଳସୀ ଗଛ ପୃଥିବୀ ଉପରେ ଦେଖାଦେଲା । ତୁଳସୀ ସବୁ ପ୍ରକାର ବିଷ୍ଣୁ ପୂଜା ପାଇଁ ପ୍ରୟୋଜନ ହୁଏ । ଶାଳଗ୍ରାମ ଶିଳା ମଧ୍ୟ ଶ୍ରୀବିଷ୍ଣୁଙ୍କ ବିଗ୍ରହ ରୂପରେ ପୂଜା ପାଇଲା ।



ଥରେ ମହର୍ଷିମାନଙ୍କ ମଧ୍ୟରେ ବିବାଦ ହେଲା ଯେ ତିନି ଦେବତାଙ୍କ ମଧ୍ୟରୁ ବଡ଼ କିଏ । ଏକଥା ନିର୍ଣ୍ଣୟ କରିବାକୁ ସେମାନେ ମହର୍ଷି ଭୃଗୁଙ୍କୁ ପଠାଇଲେ । ପ୍ରଥମେ ଭୃଗୁ ବ୍ରହ୍ମଲୋକରେ ପହଞ୍ଚି ଦେଖିଲେ ବ୍ରହ୍ମା ସରସ୍ୱତୀଙ୍କ ବୀଣାବାଦନ ଶୁଣି ମଗ୍ନ ହୋଇ-ଥା'ନ୍ତି । ଭୃଗୁଙ୍କ ଆଗମନ ସେ ଜାଣି ପାରିଲେ ନାହିଁ । କିଛି ସମୟ ଅପେକ୍ଷା କରିବା ପରେ ସେ କୈଳାସକୁ ଗଲେ । ସେଠି ଦେଖିଲେ ଶିବ ପାର୍ବତୀଙ୍କ ସହିତ ନୃତ୍ୟ କରୁଛନ୍ତି । ସେ ପରିସ୍ଥିତିରେ ଭୃଗୁଙ୍କର ଆଗମନରେ ସେ ଟିକିଏ କ୍ଷୁର୍ଣ୍ଣ ହେଲେ ।

ଦୁଇ ସ୍ଥାନରେ ଅପମାନିତ ହୋଇ ଭୃଗୁ ରାଗି ଉଠିଲେ । ତାଙ୍କର ଗୋଟିଏ ପାଦରେ ଗୋଟିଏ ଆଖି ଥାଏ ସେଥିପାଇଁ ମଧ୍ୟ ସେ ଟିକିଏ ଗର୍ବ କରନ୍ତି । ସେ ରାଗ ଅବସ୍ଥାରେ ଯାଇ ବୈକୁଣ୍ଠରେ ପହଞ୍ଚିଲେ । ସେତେବେଳେ ବିଷ୍ଣୁ ଲକ୍ଷ୍ମୀଙ୍କ ସହିତ ବସି ଗଳ୍ପ କରୁଥିଲେ । ଭୃଗୁ କ୍ରୋଧବଶତଃ ବିଷ୍ଣୁଙ୍କ ବକ୍ଷସ୍ଥଳରେ ପଦାଘାତ କଲେ । ବିଷ୍ଣୁ ତତ୍କ୍ଷଣାତ୍ ଉଠିପଡ଼ି ମୁନିଙ୍କୁ ନମସ୍କାର କଲେ ଓ ତାଙ୍କ ପାଦକୁ ଆଉଁସି ଦେଇ କହିଲେ, "ଆହା ଆପଣଙ୍କ ପାଦକୁ କି କଷ୍ଟ ହୋଇଥିବ ।" ଭୃଗୁଙ୍କ ପାଦକୁ ଆଉଁସି ଦେବାବେଳେ ସେ ତାଙ୍କର ପାଦରେ ଥିବା ନେତ୍ରକୁ ମଧ୍ୟ ଦବାଇ ଦେଇ ନିଷ୍ପ୍ରଭ କରି ଦେଇଥିଲେ । ତଦ୍ଦ୍ୱାରା ତାଙ୍କର ଗର୍ବ ଭାଙ୍ଗି ଯାଇଥିଲା । ତା'ପରେ ଭୃଗୁ ବିଷ୍ଣୁଙ୍କର ସ୍ତୁତି କଲେ ଓ ସେଠାରୁ ଫେରି ମୁନିମାନଙ୍କୁ ବିଷ୍ଣୁଙ୍କର ମହତ୍ତ୍ୱ ବିଷୟରେ ବର୍ଣ୍ଣନା କଲେ ।

କିନ୍ତୁ ଭୃଗୁଙ୍କର ପଦାଘାତ ଦେଖି ଲକ୍ଷ୍ମୀ ସେଠାରୁ ବିରକ୍ତ ହୋଇ ଚାଲି ଆସିଲେ ଓ ପୃଥିବୀରେ କୌଣସି ସ୍ଥାନରେ ତପସ୍ୟାରେ ମଗ୍ନ ହେଲେ । ତେଣୁ ବିଷ୍ଣୁ ମଧ୍ୟ ଲକ୍ଷ୍ମୀଙ୍କୁ ଖୋଜି ଖୋଜି ପୃଥିବୀକୁ ଆସିଲେ । ସେ ଶ୍ରୀନିବାସ ନାମରେ ବକୁଳାଦେବୀଙ୍କ ଆଶ୍ରମରେ ଆସି ପହଞ୍ଚିଲେ । ବକୁଳାଦେବୀହିଁ କୃଷ୍ଣ ଅବତାର ସମୟରେ ଥିଲେ ମାତା ଯଶୋଦା । ଥରେ ମାତା ଯଶୋଦା କୃଷ୍ଣଙ୍କୁ କହିଥିଲେ,



"କୃଷ୍ଣ ତୁ କ'ଣ ଜାଣୁନା ଯେ ପୁତ୍ରକୁ ବିବାହ କରାଇ ପୁତ୍ରବଧୂଟିଏ ଘରକୁ ଆଣିବା ପାଇଁ ମା'ର କେତେ ପ୍ରବଳ ଇଚ୍ଛା ଥାଏ ? ମୋର ତ ଏ ଇଚ୍ଛା ପୂରଣ ହୋଇପାରୁ ନାହିଁ ।"

କୃଷ୍ଣ କହିଥିଲେ, "ମା, ଆସନ୍ତା ଜନ୍ମରେ ତୁମର ଏ ଇଚ୍ଛା ପୂର୍ଣ୍ଣ ହେବ ।"

ଏ ଜନ୍ମରେ ବକୁଳା ଦେବୀ ଶ୍ରୀନିବାସଙ୍କୁ ପୁତ୍ର ପରି କରି ରଖିଲେ ଓ ପରମାନନ୍ଦିତ ହେଲେ । ସେ ସେଠାରେ କିଛିଦିନ ରହିବା ପରେ ଦିନେ ଗୋଟିଏ ବନ ମଧ୍ୟରେ ବୁଲୁଥା'ନ୍ତି । ସେ ଦୂରରୁ ଦେଖିଲେ ସେଠାକୁ ଏକ ସୁନ୍ଦରୀ କନ୍ୟା ତା'ର ସଖୀମାନଙ୍କ ଗହଣରେ ସେଠାରେ ଆସି ପହଞ୍ଚିଲା ବନ ବିହାର କରିବା ପାଇଁ । ସେ ଥିଲା ଆକାଶ ରାଜାର କନ୍ୟା । ଅଳ୍ପ ସମୟ ପରେ ଗୋଟିଏ ମତ୍ତ ହସ୍ତୀ ଆସି ସେଠାରେ ପହଞ୍ଚିଲା । ଯିଏ ଯୁଆଡ଼େ ପଳାଇଲେ । ଏକମାତ୍ର ରାଜକନ୍ୟାଙ୍କୁ ଦେଖି ହାତୀ ସେଇଆଡ଼େ ଚାଲିଲା । ରାଜକୁମାରୀ ଭୟଭୀତ ହୋଇ ଦୌଡ଼ୁ ଦୌଡ଼ୁ ଶ୍ରୀନିବାସ ନିକଟରେ ଆସି ପଡ଼ିଗଲେ । ଶ୍ରୀନିବାସ ହାତୀ ଓ ରାଜକୁମାରୀଙ୍କ ମଝିରେ ଠିଆ ହୋଇଗଲେ । ତା'ପରେ ମତ୍ତହାତୀ ଶାନ୍ତ ହୋଇ ଶ୍ରୀନିବାସଙ୍କୁ ପ୍ରଣାମ କଲା ଓ ସେଠାରୁ ଚାଲିଗଲା । ହାତୀ ଚାଲିଯିବା ପରେ ରାଜକୁମାରୀ ପଦ୍ମାବତୀ ଉଠିଲେ । ସେଇ ଘଟଣା ଯୋଗୁ ସ୍ୱାଭାବିକ ଭାବରେ ତାଙ୍କର ଶ୍ରୀନିବାସଙ୍କ ପ୍ରତି ଅନୁରାଗ ସେ ପ୍ରକାଶ କଲେ । ପରସ୍ପର ପରସ୍ପର ପ୍ରତି ଆକୃଷ୍ଟ ହେଲେ । ପ୍ରକୃତରେ ରାବଣର ସ୍ପର୍ଶରେ ନିଜକୁ ଭସ୍ମୀଭୂତ କରିଥିବା ବେଦବତୀହିଁ ଏବେ ପଦ୍ମାବତୀ ହୋଇ ଜନ୍ମ ହୋଇଛନ୍ତି । ସେ ଲକ୍ଷ୍ମୀଙ୍କର ଅଂଶଭୂତା ଥିଲେ । ଏ ଘଟଣା ପରେ ବକୁଳା ଦେବୀ ଅନ୍ୟାନ୍ୟ ଋଷିପତ୍ନୀମାନଙ୍କ ସହିତ ଆକାଶରାଜା ଘରକୁ ବିବାହ ପ୍ରସ୍ତାବ ନେଇ ଗଲେ । ଇତିମଧ୍ୟରେ ଶ୍ରୀନିବାସ ଏକ ମାଳୁଣୀ ରୂପରେ ଯାଇ ପଦ୍ମାବତୀଙ୍କୁ କହିଲେ, "ତୁମେ ଯେଉଁ ବରକୁ ଚାହିଁଥିଲ ତାଙ୍କର ସହିତ ତୁମର ବିବାହ ହେବ ।"

ପ୍ରକୃତରେ ସେ ବିଷ୍ଣୁଙ୍କୁହିଁ ପତି ଭାବରେ ପାଇବାକୁ ତପସ୍ୟା କରୁଥିଲେ ।

ପଦ୍ମାବତୀ ଓ ଶ୍ରୀନିବାସଙ୍କର ବିବାହ ବହୁତ ଆଡ଼ମ୍ବରରେ ସମ୍ପନ୍ନ ହେଲା । ଏହି ବିବାହ ପାଇଁ କୁବେର ଧନ, ସୁବର୍ଣ୍ଣ ଓ ରତ୍ନରାଜି ସବୁ ପଠାଇ ଦେଇଥିଲେ । ବିବାହ ପରେ ପଦ୍ମାବତୀଙ୍କୁ ନେଇ ଶ୍ରୀନିବାସ ଫେରିଲେ ।

ଇତମଧ୍ୟରେ ନାରଦ ଯାଇ ତପସ୍ୟାରତା ଲକ୍ଷ୍ମୀଙ୍କୁ ଶ୍ରୀନିବାସଙ୍କ ବିବାହ କଥା କହିଲେ । ଲକ୍ଷ୍ମୀ ଶୀଘ୍ର ସେଠାକୁ ଆସୁଥା'ନ୍ତି । ଏକଥା ଶୁଣି ଶ୍ରୀନିବାସ ପଦ୍ମାବତୀଙ୍କୁ ଛାଡ଼ି ସାତଶିଖର ଥିବା ଶେଷାଦ୍ରି ପର୍ବତ ଉପରେ ଥାଇ ଲକ୍ଷ୍ମୀଦେବୀଙ୍କର ପ୍ରତୀକ୍ଷା କରିବାକୁ ଲାଗିଲେ । ଲକ୍ଷ୍ମୀଦେବୀ ନିକଟତର ହୁଅନ୍ତେ ଦୁହେଁ ଦୁହିଁଙ୍କୁ ଦେଖି ମନ୍ଦହାସ କରିବାକୁ ଲାଗିଲେ ଓ ବିଷ୍ଣୁ ତତ୍‌କ୍ଷଣାତ୍ କଳାପଥରର ମୂର୍ତ୍ତିରେ ପରିଣତ ହେଲେ । ସେହି ମୂର୍ତ୍ତିର କଣ୍ଠଦେଶରେ ପବିତ୍ର ତୁଳସୀ ହାର ସର୍ବଦା ଝୁଲୁଥାଏ । ସେହି ମୂର୍ତ୍ତି ମଧ୍ୟରେ ବିଷ୍ଣୁ, ଶିବ ଓ ଶକ୍ତିଙ୍କ ଅଂଶ ସହିତ ଅନ୍ୟାନ୍ୟ ଦେବାଦେବୀଙ୍କ ଅଂଶ ମଧ୍ୟ ପ୍ରକଟ ହୁଏ । ତା'ପରେ ଭକ୍ତଙ୍କ ବାଞ୍ଛିତ ରୂପରେ ଦର୍ଶନ ଦେବାକୁ ଯାଇ ସେ ଶ୍ରୀନିବାସ, ଭେଙ୍କଟରମଣ ଓ ଭେଙ୍କଟେଶ୍ୱର ଇତ୍ୟାଦି ନାନା ପ୍ରକାର ନାମରେ ନାମିତ ହେଲେ ।

ପଦ୍ମାବତୀ ଶେଷାଦ୍ରିର ସମୀପରେହିଁ ଅଲମେଲ୍ ମଙ୍ଗମ୍ମା ରୂପରେ ରହିଲେ । ଲକ୍ଷ୍ମୀ ଯେଉଁଠି ତପ କରୁଥିଲେ ସେହିଠାରେହିଁ ମହାଲକ୍ଷ୍ମୀଙ୍କ ରୂପରେ ସ୍ଥାପିତ ହୋଇଥା'ନ୍ତି । ସେହିଠାରେହିଁ କୋହ୍ଲାପୁର ସହର ନିର୍ମିତ ହେଲା ।

ଭକ୍ତମାନଙ୍କ ଡାକ ଶୁଣିବାକୁ ବିଷ୍ଣୁ ଶେଷାଦ୍ରି ଚୂଡ଼ାରେ ଭେଙ୍କଟେଶ୍ୱର ନାମ ନେଇ "କଳିଯୁଗର ଦେବତା" ଭାବରେ ସମସ୍ତ ଐଶ୍ୱର୍ଯ୍ୟ ସହ ବିରାଜମାନ କରୁଛନ୍ତି । ବିଷ୍ଣୁଙ୍କର ଏ ସମସ୍ତ ଲୀଳା ଶୁଣି ମୁନିମାନେ ମହାଆନନ୍ଦିତ ହୋଇ ଉଠିଲେ ।





# ସହକାରୀ ନିର୍ବାଚନ

ମଧୁ ଗୁପ୍ତ ବେପାର କରୁଥିଲେ । ଶ୍ରାବଣପୁରରେ ତାଙ୍କ ଦୋକାନ । ତେବେ ସହରରୁ ମାଲ୍ ଖରିଦ୍ ହୋଇ ଆସୁଥିଲା ।

ସହରରୁ ମାଲପତ୍ର ଖରିଦ୍ କରିବା ସକାଶେ ଜଣେ ସହକାରୀ ଆବଶ୍ୟକ ହେବାରୁ ସେ ତାଙ୍କର ଜଣେ ବନ୍ଧୁଙ୍କୁ କହିଲେ । ବନ୍ଧୁ ସେଇଠୁ ଦୁଇଜଣ ଯୁବକଙ୍କୁ ପଠାଇ ଦେଲେ; ଖବର ପଠାଇଲେ କି ଦୁହେଁ ବିଶ୍ୱସ୍ତ । ସେ ଯାହାକୁ ଇଚ୍ଛା ତାକୁ କାମରେ ରଖାଇ ପାରନ୍ତି ।

ମଧୁ ଗୁପ୍ତ ଦୁଇ ଯୁବକଙ୍କୁ ଦାଣ୍ଡରେ ବସାଇ ଘର ଭିତରକୁ ଗଲେ । ପ୍ରାୟ ଅଧଘଣ୍ଟାଏ ପରେ ବାହାରି ଆସି କହିଲେ, "ମୋତେ ଆଜି ସହରଖୁଣ୍ଡା ବଜାରକୁ ଯିବାକୁ ପଡ଼ିବ । ଜଣକୁ କିଛି ଟଙ୍କା ଦେବାର ଥିଲା । ସେ ଖବର ପଠାଇଛି କି ଆଜି ତା'ର ଟଙ୍କା ଜରୁରି ଦରକାର । ତମେ ଦୁହେଁ ଯାଅ । ମୁଁ ମୋ ବନ୍ଧୁ ପାଖକୁ ପରେ ଖବର ପଠାଇବି । ଆଚ୍ଛା, କହି ପାରିବ, ସହର୍‌ଖୁଣ୍ଡାରେ ଭଲ ଚଟିଘର ଅଛି କି ନାହିଁ ?"

ଗଜକୁମାର ନାମକ ଯୁବକ ସଙ୍ଗେ ସଙ୍ଗେ କହିଲା, "ଆଜ୍ଞା, ମୁଁ ଚାରିଥର ଯାଇଛି ଓ ବଜାରର ଚାରୋଟିଯାକ ଚଟିଘରେ ଥରେ ଥରେ ରହିଛି । ସବୁ ଚଟିଘରେ ଖାଦ୍ୟଦ୍ରବ୍ୟ କିନ୍ତୁ ଅତିଶୟ ଖରାପ । ସବୁଥର ମୋ ପେଟ ଖରାପ ହୋଇଛି । ତେବେ ଆହୁରି ମାରାତ୍ମକ କଥା କ'ଣ ଜାଣନ୍ତି ? ସେଠି ପକେଟମାରୁ ଓ ଚୋର ଖାଲି କିଲିବିଲି ହେଉଛନ୍ତି । ଚାରିଥର ଯାକ ମୁଁ କିଛି ନା କିଛି ହରାଇଛି ।"

"ସତେ ? ତମେ କେବେ ସହରଖୁଣ୍ଡା ଯାଇନାହିଁ ?" ମଧୁ ଗୁପ୍ତ ବଂଶୀଧର ନାମକ ଅନ୍ୟ ଯୁବକ ଜଣକୁ ପଚାରିଲେ ।

"ଯାଇଛି ଆଜ୍ଞା । ଆଠ ଦଶଥର ଯାଇଛି । ରାଜକୁମାର ଯାହା କହିଲେ, ସେସବୁ ସତ ।" ବଂଶୀଧର କହିଲା ।

"ତମେ ବି ପଇସା ପତ୍ର ହରାଇଛ ଓ ଚଟିଘରେ ଖାଇ ବେମାର ପଡ଼ିଛ ?" ମଧୁ ଗୁପ୍ତ ପଚାରିଲେ ।

"ହଁ ଆଜ୍ଞା, ପ୍ରଥମଥର ମୋ ପକେଟମାରୁ ହୋଇଗଲା । ପରେ ଯେତେଥର ଯାଇଛି, ଖୁବ୍ ସତର୍କ ହୋଇ ଚାଲିଛି । ତେଣୁ ଆଉ ଚୋରି ହୋଇନାହିଁ । ପ୍ରଥମଥର ମୋର ବି ଚଟିଘରେ ଖାଇ ପେଟ ଖରାପ ହେଲା । ତେଣିକି ମୁଁ ସାଥିରେ ଖାଦ୍ୟ ଦ୍ରବ୍ୟ ଧରି ଯାଏଁ । ସେଠି କିଛି କିଣି ଖାଏ ନାହିଁ ।" ବଂଶୀଧର ଉତ୍ତର ଦେଲା ।

"ଆଚ୍ଛା ହେଉ । ଯାଅ ।"

"କହୁଥିଲି କି, ଯଦି ଖାଲି ଟଙ୍କାତକ ଦେଇ ଆସିବା କଥା, ଆପଣ ନିଜେ କଷ୍ଟ କରି ନଯାଇ ମୋତେ ଦେଲେ ମୁଁ ଦେଇ ଆସିବି । କାରଣ ସହରଖୁଣ୍ଟା ଯିବା ଅଭ୍ୟାସ ମୋର ଅଛି । ଗୋଟାଏ ସିଧା ବାଟ ବି ମୁଁ ଜାଣେ ।" ବଂଶୀଧର କହିଲା ।

"ବେଶ୍, ବେଶ୍, ଧନ୍ୟବାଦ । ତେବେ ମୋତେ ଯିବାକୁହିଁ ପଡ଼ିବ । ସେ ଭଦ୍ରଲୋକଙ୍କ ସହ ଦୁଇପଦ କଥାବାର୍ତ୍ତା ବି ହେବାର ଅଛି ।" ମଧୁଗୁପ୍ତ କହିଲେ ।

ଦୁହେଁ ନମସ୍କାର କରି ଚାଲିଗଲେ । ରାତିରେ ମଧୁ ଗୁପ୍ତ ତାଙ୍କ ବନ୍ଧୁଙ୍କୁ ଖବର ଦେଲେ, "ବଂଶୀଧରକୁ କାମରେ ଯୋଗ ଦେବାକୁ କହିଦିଅ ।"

ବନ୍ଧୁ ପଚାରିଲେ, "ରାଜକୁମାର କ'ଣ ସାଧୁ ନୁହେଁ ବୋଲି ତମର ଧାରଣା ହେଲା ?"

"ନା, ନା, ସେ ପରୀକ୍ଷା ମୁଁ କରିନାହିଁ । କାରଣ ତମ କଥାରେ ମୁଁ ବିଶ୍ୱାସ କରେଁ । ରାଜକୁମାରର ଦୋଷ ହେଲା ସେ ଠକି ମଧ୍ୟ ଶିଖେନାହିଁ । ବଂଶୀଧର ଯେଉଁ ଅଭିଜ୍ଞତା ଅରଜେ, ସେଥିରୁ ଶିକ୍ଷା ଲଭ କରେ ।" ମଧୁ ଗୁପ୍ତ ବୁଝାଇ ଦେଲେ ।






# ଦିବ୍ୟ ଔଷଧ

ଗୋଟିଏ ଦେଶରେ ଜଣେ ରାଜା ଥା'ନ୍ତି। ତାଙ୍କର ଜଣେ ରାଣୀ ମଧ୍ୟ ଥା'ନ୍ତି। ଦୁହେଁ ଅତ୍ୟନ୍ତ ବୋକା। ସେମାନଙ୍କର କନ୍ୟା ସନ୍ତାନଟିଏ ଜନ୍ମ ହେଲା। ରାଣୀ ଓ ରାଜା ଝିଅକୁ ଦେଖି ମୁଣ୍ଡରେ ହାତ ଦେଇ ବସିଲେ।

ରାଣୀ କହିଲେ, "ଛି, ଛି, କି ଦୁର୍ଭାଗ୍ୟ। ଏତେ କୁତ୍ସିତ ଝିଅଟାଏ ଜନ୍ମ ହେଲା ଯେ ବାଳ ବି ନାହିଁ, ଦାନ୍ତ ବି ନାହିଁ, ପାକୁଆ ପାଟି।"

ରାଜା କହିଲେ, "ସତ ସତ, ଏପରି ଅପ୍ରାକୃତିକ ବିକୃତ କମାକାର ଝିଅଟା ବଡ଼ ଅଶୁଭସୂଚକ। ଏକଥା ସମସ୍ତେ ଜାଣିଲେ ମୋତେ ତ ସାଂଘାତିକ ଅପମାନ ହେବ। କ'ଣ କରିବା?"

ମନ୍ତ୍ରୀମାନେ ଏକଥା ଶୁଣି ରାଜା ଓ ରାଣୀଙ୍କୁ କହିଲେ, "ଦେଖନ୍ତୁ, ଆପଣମାନେ ଏ କଥାରେ ମନ କଷ୍ଟ କରନ୍ତୁ ନାହିଁ। ନବଜାତ ଶିଶୁଙ୍କ କସ୍ମିନ୍‌କାଳେ ଦାନ୍ତ ନଥାଏ। ବାଳ ମଧ୍ୟ ଅଧିକାଂଶଙ୍କର ନଥାଏ।"

ରାଜା କହିଲେ, "ନା, ଏସବୁ ଖାଲି ଆମକୁ ସହାନୁଭୂତି ଦେଖାଇବା ପାଇଁ ତମେମାନେ କହୁଛ। ଭଲ ଭଲ ବୈଦ୍ୟମାନଙ୍କୁ ଏଠାକୁ ଡକାଅ।"

ବୈଦ୍ୟମାନେ ଆସିଲେ। ସବୁ ବୈଦ୍ୟଙ୍କୁ ଏକାଠି କରି ରାଜା କହିଲେ, "ମୋର ଝିଅଟିଏ ହୋଇଛି। ଜନ୍ମ ହୋଇଛି ଛୋଟିଆଟିଏ ହୋଇ। ପୁଣି ତା' ମୁଣ୍ଡରେ ବାଳ ନାହିଁ ବା ପାଟିରେ ଦାନ୍ତଟିଏ ନାହିଁ। ତମେମାନେ ଔଷଧ ଦେବ ଯେଉଁଥିରେ କି ତା'ର ଦାନ୍ତ, ବାଳ ଉଠିବ।"

"ମହାରାଜ! ଏକଥା ତ ସମ୍ଭବ ନୁହେଁ।"

"ଶୁଣ, ମୁଁ ହେଉଛି ଚକ୍ରବର୍ତ୍ତୀ ରାଜା, ଅର୍ଥାତ୍ ମୁଁ ହେଉଛି ସମ୍ରାଟ। ମୁଁ ଯାହା କହୁଛି

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ତାହା କର, ନହେଲେ ତୁମମାନଙ୍କୁ ଚାବୁକ୍ ମାରି ମାରି ପିଠିରୁ ଛାଲ ବାହାର କରିଦେବି । ଏବେ ତୁମକୁ କିଛି ସମୟ ଦେଉଛି । ଘବଚନ୍ତ୍ର କୁହ ।" ରାଜା କହିଲେ ଓ ଅନ୍ୟ କକ୍ଷକୁ ଚାଲିଗଲେ ।

କିଛି ସମୟ ପରେ ରାଜା ଫେରି ଆସି ଦେଖିଲେ ବୈଦ୍ୟମାନେ ମୁଣ୍ଡ ତଳକୁ କରି ମହା ଚିନ୍ତାରେ ପଡ଼ି ବସିଛନ୍ତି । ପୁଣି ରାଜା ପଚାରିଲେ, "କ'ଣ ଚାହଁ ? ଔଷଧ ଦେବ ନା ମାଡ଼ ଖାଇବ ?"

ସମସ୍ତେ ନୀରବ ରହିଲେ ।

ଜଣେ ବୃଦ୍ଧ ବୈଦ୍ୟ ଶେଷରେ ଉଠି କହିଲେ, "ମହାରାଜ, ଆମେମାନେ ଅବଶ୍ୟ ଆପଣଙ୍କ ଆଦେଶ ପାଳନ କରିବୁ । କିନ୍ତୁ ସମୟ ଲାଗିବ । ଗୋଟିଏ ସ୍ୱର୍ଗୀୟ ଔଷଧ ଅଛି । ସେଇଟା ମିଳିଲେ ରାଜକୁମାରୀଙ୍କର ଦାନ୍ତ ବାଳ ସବୁ ଉଠିବ ।"

"ଠିକ୍ ଅଛି । କୁହ ଦିବ୍ୟ ଔଷଧ କିପରି ମିଳିବ ?" ରାଜା କହିଲେ ।

"ଏବେ ତ ତିଆରି ହୋଇନାହିଁ । ତିଆରି କରିବାକୁ ସମୟ ଲାଗିବ ।"

"କାହିଁକି ସମୟ ଲାଗିବ ? ମୁଁ ଖାଲି ରାଜା ନୁହେଁ, ରାଜାଧିରାଜ, ଚକ୍ରବର୍ତ୍ତୀ ଓ ସମ୍ରାଟ । ଆଉ ଔଷଧ ମିଳିବାକୁ କଷ୍ଟ ହେବ । ଏବେହିଁ ତିଆରି କରିବାରେ ଲାଗିପଡ଼ । କ'ଣ ଦରକାର କୁହ ଦିଆଯିବ ।" ରାଜା କହିଲେ ।

"ଆପଣଙ୍କ କଥା ଠିକ୍ । କିନ୍ତୁ ଦିବ୍ୟ ଔଷଧ ତିଆରି କରିବାକୁ ହେଲେ ଚାରିଶହ ପଞ୍ଚଷଠି ପ୍ରକାର ଜଡ଼ିବୁଟି ଦରକାର ଏବଂ ସେଥିରେ ତିନିଶ ବାରପ୍ରକାର ଧାତୁ ଦରକାର ।" ବୈଦ୍ୟ କହିଲେ ।

ରାଜା ଗର୍ବର ସହିତ କହିଲେ, "ସବୁ ଜିନିଷ ନେଇ ଆସ, ଯେତେ ଖର୍ଚ୍ଚ ହେଉ । କିନ୍ତୁ ଦିବ୍ୟ ଔଷଧ ତିଆରି କର । ଯେପରି ସେଇଟା ଶିଘ୍ର ତିଆରି ହୋଇଯିବ !"

"ମହାରାଜ, ଏ କାମ ଏତେ ଶିଘ୍ର ହେବା ମୁଷ୍କିଲ୍ । ସେଥିରେ ଏକ ଗଛର ଫୁଲ ଦିଆଯିବ ଯାହା ଦୁଇ ବର୍ଷରେ ଥରେ ଫୁଟେ । ଯେତେବେଳେ ତାହା ଚତୁର୍ଥ ଥର ଫୁଟେ

ସେତେବେଳେହିଁ ତାକୁ ଛିଣ୍ଡାଇ ଆଣିବ । ସେହିପରି ଗୋଟିଏ ଧାତୁ ଏକ ବରଫ ପାହାଡ଼ରେ ଥାଏ । କିନ୍ତୁ ସେହି ପାହାଡ଼ର ବରଫ କେତେବର୍ଷରେ ଥରେ ତରଳେ । ସେହିପରି ଦୁଇଥର ବରଫ ତରଳିଲା ପରେ ସେ ଧାତୁକୁ ଖୋଳି ଆଣିବାକୁ ହେବ ।"

"ଠିକ୍ ଅଛି । ଏ ଔଷଧ ଦୁଇ ସପ୍ତାହ ମଧ୍ୟ ତିଆରି ହୋଇଯିବ ?" ରାଜା ପଚାରିଲେ ।

"ନାହିଁ ଆଜ୍ଞା, ଆହୁରି ବହୁତ ସମୟ ଲାଗିବ । ବରଂ ଆପଣ ଆଉ ଗୋଟିଏ କଥା କରନ୍ତୁ । ରାଜକୁମାରୀଙ୍କୁ ଆମକୁ ବାରବର୍ଷ ପାଇଁ ସମର୍ପି ଦିଅନ୍ତୁ । ଆମେ ଯଥା ସମୟରେ ଔଷଧ ଆଣି ତାଙ୍କର ଚିକିତ୍ସା କରିବୁ ।" ବୈଦ୍ୟ କହିଲେ ।

ରାଜା ରାଣୀଙ୍କୁ ପଚାରିଲେ, "ରାଣୀ, ତୁମର ଏଥିପାଇଁ ମତ କ'ଣ ? ଆମେ ବାରବର୍ଷ ପର୍ଯ୍ୟନ୍ତ ଝିଅଙ୍କୁ ସେମାନଙ୍କ ହାତରେ ସମର୍ପି ଦେବା ଚିକିତ୍ସା ପାଇଁ ନା ତାଙ୍କୁ ସବୁ ଚାବୁକ୍ ମାରିବା ?"

ରାଣୀ ଟିକିଏ ଚିନ୍ତାକରି କହିଲେ, "ତାଙ୍କୁ ବାରବର୍ଷ ପାଇଁ ଝିଅକୁ ଦେଇ ଦେଖିବା କିପରି ସେମାନେ ଚିକିତ୍ସା କରୁଛନ୍ତି । ଯଦି ଭଲ ଚିକିତ୍ସା ଝିଅର ନ ହୋଇଥାଏ ତେବେ ଚାବୁକ୍ କାହିଁକି ଏକାବେଳେ ମୁଣ୍ଡକାଟ ।"

ରାଜା ରାଣୀଙ୍କ କଥା ଗ୍ରହଣ କଲେ । ବୈଦ୍ୟମାନେ ରାଜକୁମାରୀଙ୍କୁ ନେଇଗଲେ । ରାଜାଙ୍କଠାରୁ ଚିକିତ୍ସା ପାଇଁ ତ ଯଥେଷ୍ଟ ଟଙ୍କା ପାଉଥା'ନ୍ତି । ତେଣୁ ଅତି ଆଦରରେ ପିଲାକୁ ପାଳିଲେ । ଯଥା ସମୟରେ ବାଳ ଓ ଦାନ୍ତ ଉଠିଲା । କ୍ରମେ ସେ ଗୋଟିଏ ସୁନ୍ଦର ଝିଅରେ ପରିଣତ ହେଲା । ଯଥା ସମୟରେ ତାଙ୍କୁ ନାନା ପ୍ରକାର ଶିକ୍ଷା ଦିଆଗଲା ।

ବାରବର୍ଷ ପରେ ସେମାନେ ସୁଶିକ୍ଷିତା ଓ ସୁନ୍ଦରୀ ରାଜକୁମାରୀଙ୍କୁ ନେଇ ରାଜାରାଣୀଙ୍କୁ ସମର୍ପଣ କଲେ । ରାଜା ରାଣୀ ଝିଅକୁ ଦେଖି ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ବୈଦ୍ୟମାନେ ଯଥେଷ୍ଟ ପୁରସ୍କାର ପାଇଲେ ।



# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଡିସେମ୍ବର ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ


P. R. Herle


S. B. Prasad

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୁର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅକ୍ଟୋବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

ଅଗଷ୍ଟ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : କେ ଦେଇ ପାରିବ ଫୁଲର ମୂଲ!
ଦ୍ୱିତୀୟ ଚିତ୍ର : ଶିଶୁହିଁ ଅଟଇ ତାହାର ତୁଲ!!
ପୁରସ୍କାର ବିଜୟୀ : କୁଂଜ ବିହାରୀ ଦାଶ, ବରୀ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ଶରାବତୀ ନଦୀ ସୃଷ୍ଟି ଯୋଗ ଜଳପ୍ରପାତ। ୨. ହରଦ୍ୱାର। ୩. ସାବରମତୀ।
୪. ମଧ୍ୟପ୍ରଦେଶ। ୫. କଲିକତାରେ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.